# ଯଦୁମଣିଙ୍କ ଯାଦୁମଣି


ଲେଖକ :

ଶ୍ରୀ ବାସୁଦେବ ମହାପାତ୍ର, ବ. ଏ., ଡ. ଇଡ୍.

ଜାତୀୟ ପୁରସ୍କାର ପ୍ରାପ୍ତ ଶିକ୍ଷକ





ବିନୟ ବୁକ୍ ଷ୍ଟୋର

ବାରିକସ୍, ବ୍ରହ୍ମପୁର, ଗଞ୍ଜାମ

ମୂଲ୍ୟ—ପାଞ୍ଚଟଙ୍କା ମାତ୍ର

## ଏଥିରେ ଅଛି :



---


ଯଦୁମଣିଙ୍କ ଯାଦୁମୁଣି

ଲେଖକ : ଶ୍ରୀ ବାସୁଦେବ ମହାପାତ୍ର
ବି. ଏ., ଡ଼ି. ଇଡ଼.

ପ୍ରକାଶକ : ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର
ଭଜପ୍ଟ ବୁକ୍ ଷ୍ଟୋର, ବ୍ରହ୍ମପୁର

ପ୍ରକାଶକାଳ : ବାହୁଡ଼ା ଯାତ୍ରା ୨-୭-୯୦

ମୁଦ୍ରଣ :- ତ୍ରିମୂର୍ତ୍ତି ପ୍ରିଣ୍ଟର୍ସ
ବ୍ରହ୍ମପୁର

ମୂଲ୍ୟ : ପାଞ୍ଚଟଙ୍କା ମାତ୍ର




ଯଦୁମଣିଙ୍କ ଭେଣ୍ଡିଆ ସମୟର କଥା । ସେତେବେଳେ ସେ ଇଟାମାଟିରେ ରହୁଥାନ୍ତି । ସେ ନିତି ନୂଆଗଡ଼ ଯାଆନ୍ତି । ସେଠି ଲୋକମାନଙ୍କ ସହିତ କଥାଭାଷା ହେଲାବେଳେ ହସକଥା କହନ୍ତି । ହସିବା ଭଳି କବିତା ସେ ମୁହେଁ ମୁହେଁ ରଚନା କରି ବୋଲିଦିଅନ୍ତି । ତାଙ୍କ କଥା ଶୁଣି ଲୋକମାନେ ହସି ହସି ବେଦମ୍ ହୋଇଯାନ୍ତି । ସେମାନେ ଯଦୁମଣିଙ୍କୁ ବାହାବା କରନ୍ତି ।

ସେ ସମୟରେ ନୂଆଗଡ଼ ରାଜସଭାରେ ଅନେକ କବି ପଣ୍ଡିତ ଥା'ନ୍ତି । ସେ ସମସ୍ତେ ବ୍ରାହ୍ମଣ, କ୍ଷତ୍ରିୟ ଓ କରଣ ଜାତିର । ଅନ୍ୟ ଜାତିର ଲୋକମାନେ ସେଠି ଜାଗା ପାଆନ୍ତି ନାହିଁ । ଯଦୁମଣିତ ଜାତିରେ ବଢ଼େଇ । ତାଙ୍କୁ ପଚାରୁଛି କିଏ ?

ଥରେ ଚକ୍ରପାଣି ପଟ୍ଟନାୟକ ନୂଆଗଡ଼ ଆସିଲେ । ସଂସ୍କୃତ ପଣ୍ଡିତ ହିସାବରେ ତାଙ୍କର ଭାରି ନାଁ ଥିଲା । ସଂସ୍କୃତରେ ସେ ଗୁଣ୍ଡିଚା ଚମ୍ପୂ ରଚନା କରିଥିଲେ । ଗଜପତିଙ୍କଠାରୁ ଚକ୍ରବାକ୍ ଉପାଧି ପାଇଥିଲେ । ନୂଆଗଡ଼

ରାଜାଙ୍କୁ ସଂସ୍କୃତ ଶ୍ଳୋକ ଶୁଣାଇ କିଛି ପୁରସ୍କାର ପାଇବା ପାଇଁ ସେଠାକୁ ଆସିଥାନ୍ତି ।

ଚକ୍ରପାଣି ପଟ୍ଟନାୟକ ସେତେବେଳକୁ ବରବୁଢ଼ା ହେଲେଣି । ହେଲେ ଛାଟ ପଣ ଲୋକ । ମଥା ଉପରକୁ କର ୍ଗଲନ୍ତି । ସେ ଯଦୁମଣିଙ୍କ କଥା ଶୁଣିଥିଲେ । କିନ୍ତୁ ସେ ତାଙ୍କୁ କେବେ ଦେଖି ନ ଥିଲେ । ତାଙ୍କୁ ଦେଖିବାକୁ ଓ ତାଙ୍କ ସହିତ ଟିକିଏ କଥାଭାଷା ହେବାକୁ ତାଙ୍କର ଇଚ୍ଛା ଥାଏ ।

ପଟ୍ଟନାୟକେ ରାଜସଭା ଆଡ଼କୁ ମୁହାଁଇଥାନ୍ତି । ସାଙ୍ଗରେ ଜଣେ ବାଲକ ଟୋକା ଥାଏ । ଯଦୁମଣି ତାଙ୍କୁ ବାଟରେ ଦେଖିଲେ । ସେ ତ ଚାଲିଯିବା ଶଗଡ଼ରେ ହାତ ମାରିବା ଲୋକ । ପଟ୍ଟନାୟକଙ୍କୁ ଦେଖି ପଚାରିଦେଲେ—ଆଜ୍ଞା, ଆପଣ କିଏ ?

ପଟ୍ଟନାୟକେ ଭାବିଲେ, ଏଟା ମଫସଲିଆ ଲୋକ । କଥାର ବାଗ ଜାଣିନ । ତେଣୁ ବାଟରେ ଯିବା ଲୋକକୁ ଅଟକାଇ ନାଁ ପଚାରୁଛି । ସେ ଯଦୁମଣିଙ୍କୁ କହିଲେ--କାହିଁକି, ମୋ ନାଁରୁ ତୁମକୁ କ'ଣ ମିଳିବ ?

ଯଦୁମଣି କହିଲେ—ଆଜ୍ଞା, ମିଳିବ ଆଉ କ'ଣ ? ଆପଣ ତ ଏ ମୁଲକର ଲୋକ ନୁହନ୍ତି । ଜାଣିବା ପାଇଁ ଟିକିଏ ଇଚ୍ଛା ହେଲା । ସେଥିପାଇଁ ପଚାରିଦେଲି । କହିଲେ କହନ୍ତୁ, ନ କହିଲେ ନାହିଁ ।

ପଟ୍ଟନାୟକେ କହିଲେ – ବିଷ୍ଣୁଙ୍କର ହଜାରେ ନାଁ ଅଛି । ତା ଭିତରୁ ଗୋଟିଏ ନାଁ ମୋର । ବୁଝିଲ ?

ଯଦୁମଣି ଚଟକିନା କହିଲେ—ହଁ, ଆଜ୍ଞା, ଏବେ ବୁଝିଗଲି । ଆପଣଙ୍କ ନାଁ ଗୁହ ।

ଯଦୁମଣି ଊଁ-ହୁଁ-କରି ନାକରେ ଲୁଗା ଦେଲେ । ପଞ୍ଚନାୟକେ ଚମକି ପଡ଼ିଲେ । ଭାବିଲେ, ଗାଉଁଲିଆ ଲୋକଟା ଏମିତି କହି ପାରିଲା କେମିତି ? ଏ ସେଇ ଯଦୁମଣି ନୁହେ ତ ?

ଏଣେ ଯଦୁମଣିଙ୍କ କଥା ଶୁଣି ବାଳକ ଟୋକାଟା ଖିଁ-ଖିଁ ହୋଇ ହସୁଥାଏ । ଶେଷରେ ସେ ଆଉ ସମ୍ଭାଳି ନ ପାରି କହିଦେଲା—ସାଆନ୍ତେ, ଏ କ'ଣ ଏମିତି ଆସନା କଥା କହୁଛନ୍ତି ?

ସତରେ ବସ୍ତୁଙ୍କର ଗୋଟିଏ ନାଁ ହେଲା ଗୁହ । ପୁଣି ଗୁହ କହିଲେ ବିଷ୍ଠା ବା ଝାଡ଼ାକୁ ବୁଝାଏ । ଯଦୁମଣି ମଜା ଦେଖିବା ପାଇଁ ଏମିତି କହିଥିଲେ ।

ପଞ୍ଚନାୟକେ କହିଲେ—ଓହୋ, ତୁମେ ଯଦୁମଣିଟି ? ମୋ ନା ଚକ୍ରପାଣି ପଞ୍ଚନାୟକ ତୁମକୁ ଦେଖିବା ପାଇଁ ମୁଁ ଆଶା କରି ଆସିଥିଲି । ଭଲ ହୋଇଛି, ବାଟରେ ଦେଖା ହୋଇଗଲା ।

ଯଦୁମଣି ତାଙ୍କୁ ନମସ୍କାର କଲେ । ପଞ୍ଚନାୟକେ ତାଙ୍କ କଥାରି ଚତୁରୀ ଦେଖି ଭାରି ଖୁସି ହେଲେ । ସେ କହିଲେ— ଯଦୁମଣି, ତୁମେ ଦିନେ ସାରା ଓଡ଼ିଶାରେ ନିଜ ଟେକ ରଖିବ ।

ଦିନେ ରାଜସଭା ବସିଥାଏ । ରାଜା ବସିଛନ୍ତି ହୋଇଥାନ୍ତି । ସେ ଦିନ ଚାରି ଜଣ ସଭା ପଣ୍ଡିତ ସଭାକୁ ଆସି ନ ଥିଲେ । ତେଣୁ ରାଜା ମନ ମାରି ବସିଥାନ୍ତି । ତାହା ଦେଖି ପଞ୍ଚନାୟକେ କହିଲେ-ମହାରାଜ, ଆଜ୍ଞା ହେଲେ ଯଦୁମଣିଙ୍କୁ ଏଠାକୁ ଡ଼କାଇବା । ତାଙ୍କଠଉଁ କିଛି ଶୁଣିଲେ ଛାମୁଙ୍କୁ ନିଶ୍ଚୟ ଭଲ ଲାଗିବ ।

ଯଦୁମଣିଙ୍କ ନାଁ ଶୁଣି ସଭା ଲୋକମାନେ ନାକ ଟେକିଲେ । ବଡ଼େଇ ଟୋକା ଆସି ରାଜସଭାରେ ବସିବ ? କେବେ ନ ଶୁଣିଲା କଥା । ଯଦୁମଣିଙ୍କୁ ଡାକିବା କଥାକୁ ସେମାନେ

ଟାଳଟୁଳ କଲେ । ଏତକବେଳେ ରାଜା ଆଦେଶ ଦେବାରୁ ଯଦୁମଣି ସଭାକୁ ଆସିଲେ ।

ଯଦୁମଣି ମଇଳା ଧୋତିଟିଏ ପିନ୍ଧିଥାନ୍ତି । ଦେହରେ ମଇଳା ଚାଦରଟିଏ ପକାଇଥାନ୍ତି । ଉଜାଘର କେତେବେଳେ କୋଉ କଥା । ତେଣୁ ସେ ରାଜାଙ୍କୁ ମୁଣ୍ଡିଆଟିଏ ମାରି ଠିଆ ହୋଇ ରହିଲେ । ରାଜା କହିଲାଠୁ ତାଙ୍କୁ ପାଟ ଲୁଗା ଓ ଚାଦର ଦିଆଗଲା । ସେ ତାହା ପିନ୍ଧିଲେ । ପଟ୍ଟନାୟକେ ତାଙ୍କ ହାତ ଧରି ଚୌକିରେ ବସାଇଦେଲେ ।

ଚକ୍ରପାଣି ପଟ୍ଟନାୟକେ ଯଦୁମଣିଙ୍କୁ ଗୋଟିଏ ପରେ ଗୋଟିଏ ଚାରୋଟି ପ୍ରଶ୍ନ ପଚାରିଲେ । ଯଦୁମଣି ସେଗୁଡ଼ିକର ଠିକ୍ ଉତ୍ତର ଦେଲେ । ପଟ୍ଟନାୟକେ ଖୁସି ହେଲେ । ରାଜା ବି ତାଙ୍କ ଉତ୍ତରରେ ଭାରି ଖୁସି ହେଲେ ।

ତାପରେ ପଟ୍ଟନାୟକେ କହିଲେ—ଯଦୁମଣି, ଏବେ ତୁମେ ପ୍ରଶ୍ନଟିଏ ପଚାର । ମୁଁ ତାର ଉତ୍ତର ଦେବି ।

ଯଦୁମଣି ସଙ୍ଗେ ସଙ୍ଗେ କବିତା ଆକାରରେ ପ୍ରଶ୍ନଟିଏ ପଚାରିଲେ—

ଛବିରେ କେ ଜିଣେ ନବ ରବିଙ୍କି,
କେ ପେଟ ପୋଷେ ଧନୁଶର ବଙ୍କି,
ଜଳଠାରେ ଭୀତ କାହାର ନିତ,
କାର ଭୟ ନାହିଁ ଉରଗ ପ୍ରତି ।
ବିଚାରି କହିବ,
ଚାରି ପଦାର୍ଥ ଏକ ହୋଇଥିବ ।

ଏହାର ଅର୍ଥ ହେଲା—(୧) ସକାଳର ନୂଆ ସୂର୍ଯ୍ୟଙ୍କ ରଙ୍ଗଠାରୁ କେଉଁଟି ଅଧିକ ସୁନ୍ଦର ? (୨) ଧନୁଶର ବଙ୍କି କିଏ ପେଟ ପୋଷେ ? (୩) ପାଣିକୁ କିଏ ସବୁବେଳେ ଡ଼ରେ ? (୪) ସାପକୁ କିଏ ଡ଼ରେ ନାହିଁ ? ଏ ଚାରିଟି ପ୍ରଶ୍ନର ଉତ୍ତର ଗୋଟିଏ ପଦରେ କହିବ ।

ପଣ୍ଡିତନାୟକଙ୍କ ପାଟି ଫିଟିଲା ନାହିଁ । ସେ ଯଦୁମଣିଙ୍କୁ କହିଲେ—ମୁଁ ଏଇନା ଏହାର ଉତ୍ତର ଦେଇ ପାରିବ ନାହିଁ । ତୁମଠାରେ ହାର ମାନିଲି । ତୁମେ ହିଁ ଏହାର ଉତ୍ତର ଦିଅ ।

ଯଦୁମଣି କହିଲେ—ଏଇ ଚାରିଗୋଟି ପ୍ରଶ୍ନର ଗୋଟିଏ ଉତ୍ତର ହେଲା 'ଅମ୍ବର' । କାରଣ (୧) ସକାଳ ସୂର୍ଯ୍ୟଙ୍କ ନାଲି କିରଣ ଠାରୁ ଅମ୍ବର ବା ଫଗୁ ଆହୁରି ସୁନ୍ଦର । (୨) ଅବୀର ବା ଦୁର୍ବଳ ଲୋକ ଧନୁଶର ଦେଖି ପେଟ ପୋଷେ । (୩) ଅମ୍ବର ବା ଛେଳିର ପାଣିକୁ ସବୁବେଳେ ଡ଼ର ଥାଏ । ୪) ଅମ୍ବର ବା ଗରୁଡ଼ ପକ୍ଷୀର ସାପକୁ ଡ଼ର ନଥାଏ । ଏହିପରି ଏ ଚାରି ପ୍ରଶ୍ନର ଏକପଦୀ ଉତ୍ତର ହେଲା 'ଅମ୍ବର' ।

ରାଜା ଯଦୁମଣିଙ୍କୁ କିଛି ପୁରସ୍କାର ଓ ବାଟିଏ ଜମି ଦେଲେ । ତା' ଛଡ଼ା ତାଙ୍କୁ ତାଙ୍କ ସଭାକବି କରିଦେଲେ । ଏଣିକି ସେ ଯଦୁମଣିଙ୍କୁ ଆଉ ପାଖଛଡ଼ା କଲେନି ।





# ନିଆଁ ଖୁଣ୍ଟ

ଯଦୁମଣିଙ୍କ ବୁଢ଼ା ବଅସର କଥା । ଘରେ ଖାଇବାକୁ କିଛି ନ ଥାଏ । ସେ ଚିନ୍ତାରେ ପଡ଼ିଗଲେ । ଶେଷରେ ଠିକ୍ କଲେ, ଦଶପଲ୍ଲା ଯିବେ । ସେଠିକା ରାଜାଙ୍କୁ ଦେଖା କରି କିଛି ମାଗ ଯାଚ କରିବେ ।

ଯଦୁମଣିଙ୍କ ଶ୍ୱଶୁର ଘର ଦଶପଲ୍ଲାରେ । ତାଙ୍କ ଶ୍ୱଶୁର ବେଶ୍ ନାଁ ଥିବା ଲୋକ ଥିଲେ । କିନ୍ତୁ ସେତେବେଳକୁ ତାଙ୍କ ଶାଶୁ ଶ୍ୱଶୁର ମରିଯାଇଥାନ୍ତି । ଶଳା ଘର ଥାଇ ନ ଥିଲି ଭଳି । ତାଙ୍କ ନାଁ ବୁଡ଼ିଯାଇଥାଏ ।

ଭାରି କଷ୍ଟରେ ଯଦୁମଣି ଦଶପଲ୍ଲାରେ ପହଞ୍ଚିଲେ । ସେଠି ରାଜାଙ୍କୁ ଦେଖାକଲେ । ହେଲେ ରାଜା ତାଙ୍କୁ ଆଦର କଲେ ନାହିଁ । ଏ କଥା ଯଦୁମଣିଙ୍କୁ ଭାରି ବାଧିଲା । ତଥାପି ସେ ଚୁପ୍ ରହିଲେ । ମନେ ମନେ ଠିକ୍ କଲେ, ରାଜାଙ୍କୁ ବେଳ ଦେଖି ଭଲ କରି ପାନେ ଦେବେ ।

ସେତେବେଳେ ଦଶପଲ୍ଲାର ରାଜଧାନୀ ଥିଲା କୁଞ୍ଜବନ । ସେଠି ଗୋଟିଏ ମାତ୍ର ଶିବ ମନ୍ଦିର ଥିଲା । ରାଜା ନୂଆ କରି

ଜଗନ୍ନାଥ ମନ୍ଦରଟିଏ ତୋଳାଇଲେ । ଜଗନ୍ନାଥଙ୍କ ମୂର୍ତ୍ତି ତିଆରି ହେଲା । ଜଗନ୍ନାଥ ସିଂହାସନ ଉପରେ ବିଜେ ହେଲେ । ହେଲେ ଗୋଟିଏ ଅସୁବିଧା ରହିଗଲା । ମୂର୍ତ୍ତି ଉପରମୁହାଁ ହୋଇଗଲା । ତାହା ରାଜାଙ୍କର ପସନ୍ଦ ହେଲାନି । କାରିଗରମାନେ ତାହା ଠିକ୍ କରିବାକୁ ଲାଗି ପଡ଼ିଲେ । ହେଲେ ସବୁ ଫସର ଫାଟିଗଲା ।

ଏତିକବେଳେ ଯଦୁମଣିଙ୍କ ଶଳାର ପୁଅ ସେଠି ଠିଆ ହୋଇଥିଲା । ସେ କହିଲା—ଆମ ଯଦୁମଣି ପିଉସା ଦଶପଲ୍ଲା ଆସିଛନ୍ତି । ସେ ନୂଆଗଡ଼ ରାଜାଘର ଚାକର । ଭଲ ବୁଦ୍ଧାକାମ ଜାଣିଛନ୍ତି । ରାଜା ତାଙ୍କୁ କହିଲେ ମୂର୍ତ୍ତିକୁ ଠିକ୍ କରିଦେବେ ।

ଏ କଥା ରାଜାଙ୍କ କାନକୁ ଗଲା । ସେ ସାଙ୍ଗେ ସାଙ୍ଗେ ଯଦୁମଣିଙ୍କୁ ଡକାଇ ଏ କଥା କହିଲେ । ଯଦୁମଣି କାମରେ ଲାଗିଗଲେ । ମୂର୍ତ୍ତି ଠିକ୍ ହୋଇଗଲା । ଏବେ ଜଗନ୍ନାଥ ଭାରି ଡଉଲ ଦିଶିଲେ । ରାଜାଙ୍କ ମନ ପାଇଗଲା । ସେ ଖୁସି ହେଲେ । କିନ୍ତୁ ଯଦୁମଣି ଆଗରୁ ରାଜାଙ୍କ ଉପରେ ରାଗିଥିଲେ । କାରଣ ରାଜା ତାଙ୍କୁ ଖାଲି ହାତରେ ଫେରାଇ ଦେଇଥିଲେ ।

ଏହାପରେ ଜଗନ୍ନାଥଙ୍କ ନୀତି ଆରମ୍ଭ ହେଲା । ରାଜା ନିଜ ହାତରେ ଧୂପଦୀପ ଦେଲେ, ଆଲଟଚାମର ପକାଇଲେ । ତାପରେ ସେ ଠାକୁରଙ୍କୁ ମୁଣ୍ଡିଆ ମାରି ହାତ ଯୋଡ଼ି ଠିଆ ହେଲେ । ଯଦୁମଣି ପଛରେ ଠିଆ ହୋଇଥାନ୍ତି । ଶହ ଶହ ଲୋକ ଜମା ହୋଇଥାନ୍ତି । ଠିକ୍ ବେଳ ଜାଣି ଯଦୁମଣି ଗାଇଲେ—

କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡିନେବେ ଶଗଡେ ବସାଇ
ଭୋଗ ବୋଲି ଝଞ୍ଜିଦେବେ କଡ଼ୁକିଆ ମୁଆଁ
ଧୂପ ବୋଲି ମାଡ଼ିଦେବେ ନିଆଁ ଖୁଣ୍ଟା ଧୂଆଁ

ଏହାର ଅର୍ଥ ଏହିପରି—

ହେ ପ୍ରଭୁ, କୁଞ୍ଜବନରେ ଜଗନ୍ନାଥ ହୁଅ ନାହିଁ । କାରଣ ଏଠିକା ରାଜା ଠକ । ତୁମକୁ ଶଗଡ଼ରେ ବସାଇଦେଇ କହିବେ, ଏଟା ତୁମ ରଥ । ଶସ୍ତା କଡ଼ୁକଅ। ମୁଆଁ ହିଁ ତୁମକୁ ଭୋଗ ଲଗାଇବେ । ଧୂପ ନାଁରେ ତୁମ ମୁହଁରେ କଆଁଖୁଣ୍ଟା ଧୂଆଁ ମାଡ଼ିଦେବେ ।

ରାଜା ଭିତର କଥା ବୁଝିପାରିଲେ । ସେ ଯଦୁମଣିଙ୍କୁ ପାଖକୁ ଡ଼ାକି ଆଦର କଲେ । ତାଙ୍କୁ ବହୁତ ଟଙ୍କାପଇସା, ଲୁଗାପଟା ଦେଲେ । ତାପରେ ସେ କହିଲେ-- ଯଦୁମଣି, ତୁମେ ତ ଜଣେ ଭଲ କବି । ଭଲ ଚଉପଦୀ ବି କରିପାରୁଛ । ମୋ ପାଇଁ କେତେଟା ଚଉପଦୀ କରିଦେଲେ ଭଲ ହୁଅନ୍ତା ।

ରାଜା ଚାହିଁଥିଲେ, ଯଦୁମଣି ତାଙ୍କ ନାଁରେ କେତେଟା ଚଉପଦୀ ଲେଖିଦିଅନ୍ତୁ । ହେଲେ ଗୁଣର ଆଦର କରିବା ଜାଣି ନ ଥିଲେ । ଯଦୁମଣି ଦେଖିଲେ, ତାଙ୍କ କବିତା ଶୁଣି ରାଜା କିଛି ପୁରସ୍କାର ଦେଲେ । ହେଲେ ଚଉପଦୀ ମାଗଣାରେ ନେଇ ଯିବାକୁ ବସିଛନ୍ତି । ଏହାଙ୍କୁ ପୁଣି ପାନେ ମିଳିବା ଦରକାର । ସେ ସାଙ୍ଗେ ସାଙ୍ଗେ ରାଜାଙ୍କୁ କହିଲେ—କାଲି ସକାଳେ ପଣେ ଚଉପଦୀ ଛାମୁଙ୍କ ପାଖକୁ ପଠାଇଦେବି ।

ଯଦୁମଣି ଚଉପଦୀ ଲେଖିବେ କ'ଣ, ବସାଘରେ ବସି ପଣେ (ଅଶୀ ଗୋଟି) ଶାଳପତ୍ର ଠୋଲି ତିଆରି କଲେ । ଠୋଲି ଚାରିକୋଣିଆ ହୋଇ ତଳେ ବସୁଥିବାରୁ ଏହାକୁ ଚଉପଦୀ ବୋଲି ବି କୁହାଯାଏ । ଯଦୁମଣି ଠୋଲିସବୁ ରାଜାଙ୍କ ପାଖକୁ ପଠାଇଦେଲେ । ଠୋଲିଧରି ଯିବା ଲୋକ ରାଜାଙ୍କୁ କହିଲା— ଯଦୁମଣି ଛାମୁଙ୍କ ପାଖକୁ ପଣେ ଚଉପଦୀ ପଠାଇଛନ୍ତି ।

ଚଉପଦୀ ଦେଖି ରାଜା ହସି ହସି ବେଦମ୍ ହୋଇଗଲେ ସେ ଯଦୁମଣିଙ୍କୁ ଡ଼କାଇ ଭଲ ଭଲ ଜିନିଷ ଖାଇବାକୁ ଦେଲେ । କିଛି ଦିନ ପରେ ତାଙ୍କୁ ବାଟଖର୍ଚ୍ଚ ଦେଇ ବିଦାକଲେ ।




ଖଣ୍ଡପଡ଼ା ରାଜ୍ୟର ପର୍ବତଟିଏ । ତା ନାଁ ରାଜଗିରି । ଦେଖିବାକୁ ଭାରି ସୁନ୍ଦର । ସେଇ ପର୍ବତରେ ଖୋଲଟିଏ ଅଛି । ବଣଭୋଜି କରିବା ପାଇଁ ବଢ଼ିଆ ଜାଗା ସେଇଟି । ଥରେ ଖଣ୍ଡପଡ଼ା ରାଜା ସେଠି ବଣଭୋଜି କରିବାକୁ ଠିକ୍ କଲେ । ରଜାଘର ଭୋଜି । ସେମିତି ଛୋଟ କାଟିଆ ହେଲେ ଚଳିବନି । କମ୍‌ରେ ଦୁଇ ତିନି ହଜାର ଲୋକ ଖାଇବେ ।

ଖାଲି ଭୋଜିଟାଏ ହେଲେ ଚଳିବ କିମିତି ? ଖୋଦ୍ ରାଜା ବଜେ ହେବେ । ତାଙ୍କ ସାଙ୍ଗରେ କେତେ ବଡ଼ବଡ଼ିଆ ବି ଯିବେ । ତେଣୁ ଭୋଜି ସାଙ୍ଗକୁ ନାଚ ଗୀତ କିଛିଏ ହେବା ଦରକାର । ରାଜାଘର ଲୋକମାନେ ଏସବୁ ଯୋଗାଡ଼ରେ ଲାଗି ପଡ଼ିଲେ ।

ନୂଆଗଡ଼ ରାଜାଙ୍କ ସହିତ ଖଣ୍ଡପଡ଼ା ରାଜାଙ୍କର ଭଲ ପଡେ । ପାଖ ରାଜ୍ୟ । ଯିବା ଆସିବାରେ ସୁବିଧା ଥାଏ । ଖଣ୍ଡପଡ଼ା ରାଜା ନୂଆଗଡ଼ ରାଜାଙ୍କୁ ବଣଭୋଜିକୁ ନିମନ୍ତ୍ରଣ କଲେ । ନୂଆଗଡ଼ ରାଜା ଏଥିରେ ଭାରି ଖୁସି ହେଲେ ।

ସେ ଗୋଟିଏ ସୁନ୍ଦର ତାମଜାନରେ ବସି ବାହାରିପଡ଼ିଲେ । ତାଙ୍କ ସାଙ୍ଗରେ ରାଜସଭାର କେତେ ଜଣ ଓ ଚାକରବାକର ଯାଇଥାନ୍ତି । ଯଦୁମଣି ବି ରାଜାଙ୍କ ଗହଣରେ ଥିଲେ ।

ଏଣେ ଖଣ୍ଡପଡ଼ା ରାଜା ହାତୀ ଉପରେ ବିଜେ ହେଲେ । ତାଙ୍କ ସାଙ୍ଗରେ ତାଙ୍କ ଦରବାରିଆ, ଦଳବେହେରା, ପାଇକ, ପରିଛା ଆଦି ଥାଆନ୍ତି । ରାଜାଙ୍କୁ ଟେକିଟାକି କହି ଖୁସି କରିବାକୁ ଖୁସାମଦିଆ ଦଳେ ବି ଯାଇଥାନ୍ତି ।

ହାତୀ ହାଉଦାରେ ବସି ଖଣ୍ଡପଡ଼ା ରାଜା ଚାଲିଛନ୍ତି । ହାତୀ ପାହାଡ଼ ଉପରେ ଚଢ଼ି ଝୁଲି ଝୁଲି ଚାଲିଥାଏ । ତେଣେ ନୂଆଗଡ଼ ରାଜା ପାହାଡ଼ ତଳ ରାସ୍ତାରେ ତାମଜାନରେ ବସି ଚାଲିଥାନ୍ତି । ଖଣ୍ଡପଡ଼ା ରାଜା ପାହାଡ଼ ଉପରେ ଥାନ୍ତି । ନୂଆଗଡ଼ ରାଜା ତଳେ ଥାଆନ୍ତି । ନିଜ ରାଜାଙ୍କ ବଡ଼େଇ କହିବା ପାଇଁ ଏବେ ଖଣ୍ଡପଡ଼ିଆଙ୍କୁ ସୁବିଧା ମିଳିଗଲା । ସେଠିକା ପଣ୍ଡିତ ଜଣେ ସଂସ୍କୃତ ଶ୍ଳୋକଟିଏ ରଚନା କରି ଶୁଣାଇଲେ । ଓଡ଼ିଆରେ ତାହା ଏହିପରି—

ସରଗପୁରି ତ ସବୁଠାରୁ ଉଚ୍ଚ
କହନ୍ତି ମହତ ଜନ,
ଏ ପାରିଜାତକ ହାତୀ ସେହିପରି
ସରଗ ସହ ସମାନ ।

ଏହାର ଅର୍ଥ ହେଲା—ବଡ଼ ଲୋକମାନେ କହିଛନ୍ତି, ସବୁଠାରୁ ଉଚ୍ଚରେ ସ୍ୱର୍ଗ ଅଛି । ପାରିଜାତକ ହାତୀ ସ୍ୱର୍ଗ ପରି ଉଚ୍ଚରେ ଅଛି ।

ଖଣ୍ଡଡ଼ପଡ଼ା ରାଜାଙ୍କ ହାତୀର ନାଁ ଥିଲା ପାରିଜାତକ । ହାତୀ ପର୍ବତ ଉପରେ ଥାଏ । ତେଣୁ ପଣ୍ଡିତେ କହିବାକୁ ଚାହୁଁ ଥିଲେ, ଖଣ୍ଡପଡ଼ା ରାଜା ଉଚ୍ଚରେ ଅଛନ୍ତି । ଯେ ଉଚ୍ଚରେ

ରହେ ସେ ବଡ଼ । ନୂଆଗଡ଼ ରାଜା ତଳେ ଅଛନ୍ତି । ତେଣୁ ସେ ଖଣ୍ଡପଡ଼ା ରାଜାଙ୍କଠାରୁ ସାନ ।

ନୂଆଗଡ଼ିଆଙ୍କ କାନରେ ଏ କଥା ପଡ଼ିଲା । ସେମାନଙ୍କ ମୁହଁ ଶୁଖିଗଲା । ନିଜ ରାଜାଙ୍କ ଅପମାନ ସେମାନେ ସହିବେ କିମିତି ? ଯଦୁମଣି କି ଆଉ ଚୁପ୍ ରହନ୍ତି ? ସେ ତ ତର୍ମ, ତାଙ୍କ ଆଗରେ ଗୋଡ଼ ହଲାଇଲେ ସେ ସେଠି ନ ମାରି ଛାଡୁଛନ୍ତି କେତେବେଳେ ? ସେ ଗଲାଖଙ୍କାର ମାରି ବଡ ପାଟିରେ ଗାଇ ଉଠିଲେ—

ନିକତି ତଉଲ ସାନ ବଡ଼କୁ,
ବଡ଼ ଯେହୁ ସିଏ ହୁଏ ତଳକୁ ।

ତାଙ୍କ କବିତାର ଅର୍ଥ ଏହିପରି—

ନିକିତିରେ ଜିନିଷ ଓଜନ କରାଯାଏ । ଓଜନ କଲାବେଳେ ଭାରୀ ପାଖଟା ତଳେ ଲାଗିଯାଏ । ହାଲୁକା ପାଖଟା ଉପରକୁ ଉଠିଯାଏ । ନିକିତି ଜଣାଇଦିଏ, କେଉଁଟା ଭାରୀ ଆଉ କେଉଁଟା ହାଲୁକା । ଖଣ୍ଡପଡ଼ା ରାଜା ହାଲୁକା ହେବାରୁ ଉପରକୁ ଉଠିଗଲେ । ନୂଆଗଡ଼ ରାଜା ଭାରୀ ହେବାରୁ ତଳେ ରହିଗଲେ । ଯିଏ ଭାରୀ, ସେ ବଡ଼ । ଯିଏ ହାଲୁକା, ସେ ସାନ । ତେଣୁ ଖଣ୍ଡପଡ଼ା ରାଜାଙ୍କଠଉଁ ନୂଆଗଡ଼ ରାଜା ବଡ ।

ଯଦୁମଣିଙ୍କ କଥାଟା ବେଶ୍ ଜମିଲା । ସମସ୍ତେ ହସି ହସି ଗଡ଼ିଗଲେ । ଖଣ୍ଡପଡ଼ା ରାଜା ଉପରକୁ ଆଉ ଉଠିବେ କ'ଣ, ସେଠି ଅଟକିଗଲେ । ନୂଆଗଡ଼ ରାଜା ଉପରକୁ ଆସିଲାରୁ ଦିହେଁ ଏକାଠି ଖୋଲ ଆଡ଼େ ଚାଲିଲେ ।

ସେମାନେ ଖୋଲଠେଇଁ ପହଞ୍ଚିଗଲେ । ଦୁଇ ରାଜାଙ୍କ ଆସନ ଲଗାଲଗି ହୋଇ ପଡ଼ିଲା । ଯଦୁମଣି ନୂଆଗଡ଼ ରାଜାଙ୍କ

ପାଖରେ ବସିଲେ । ନାଚ, ଗୀତ, କୀର୍ତ୍ତନ, ପାଲା ଆଦି ଚାଲିଲା ।

ମଝିରେ ମଝିରେ ନୂଆଗଡ଼ଏ ଖଣ୍ଡପଡ଼ଆଙ୍କୁ ଶୁଣାଇ ଦେଉଥାନ୍ତି—

ନିକଟ ଉଭଲ ସାନ ବଡ଼କୁ,
ବଡ଼ ଯେହ୍ନୁ ସିଏ ହୁଏ ଡାଲକୁ ।

ଏ କଥା ଶୁଣିଲା କ୍ଷଣି ସମସ୍ତେ ଯଦୁମଣିଙ୍କ ଆଡ଼େ ଆଖି ଫେରାଉଥାନ୍ତି ।

ସେ ଦିନ ଭେକିଭାତ ଖାଇ ସଭିଏଁ ଖୁସି ହେଲେ । ହେଲେ ଭେକି କଥା ଲୋକେ ଭୁଲିଗଲେ । ସେମାନେ ସବୁବେଳେ ଯଦୁମଣିଙ୍କ କଥା ମନେ ରଖିଲେ । ଏବେ ବି କଥା ପଡ଼ିଲେ ଯଦୁମଣିଙ୍କ ଏଇ କବିତାଟି ଗାଇ ଦେଉଛନ୍ତି ।






ଯଦୁମଣି ବୁଦ୍ଧିମାନ୍ ଯିମିତ, ଚତୁର ସିମିତ । ସେ ଯାଗେ ଯାଗେ କବିତା ରଚନା କରି ଦେଉଥିଲେ । ସେ ଚମତ୍କାର ଗାଇ ପାରୁଥିଲେ ମଧ୍ୟ । ସେଥିପାଇଁ ନୂଆଗଡ ରାଜା ଓ ରାଣୀ ତାଙ୍କୁ ଭାରି ଭଲ ପାଉଥିଲେ । ଏହା ଦେଖି ରାଜାଙ୍କ ଲୋକମାନେ ହିଂସାରେ ଜଳି ଯାଉଥିଲେ । ସେମାନେ କେବଳ ଉଣ୍ଡି ରାଜାଙ୍କ ଆଗରେ ଯଦୁମଣିଙ୍କ ବିରୋଧରେ ଚୁଗୁଲି କରୁଥିଲେ ।

ଯଦୁମଣିଙ୍କ ସ୍ତ୍ରୀ ଖଞ୍ଜନା ଭାରି ସୁନ୍ଦରୀ ଥିଲେ, ପାଠୋଇ ବି ଥିଲେ । ତାଙ୍କୁ ଦେଖିବାକୁ ରାଜାଙ୍କର ଇଚ୍ଛା ହେଉଥାଏ । କିନ୍ତୁ ଖଞ୍ଜନା ଦେଖା ଦେଉ ନ ଥାନ୍ତି ।

ଥରେ କୁସୁମୀ ନଦୀରେ ମକର ବୁଡ଼ ପଡ଼ୁଥାଏ । ରାଜାରାଣୀ ବୁଡ଼କୁ ଯିବାକୁ ଠିକ୍ କଲେ । ଖଞ୍ଜନାଙ୍କ ସାଥିରେ ବୁଡ଼କୁ ଆସିବାକୁ ରାଜା ଯଦୁମଣିଙ୍କୁ କହିଲେ । ଯଦୁମଣି ହଁ

ମାର ଆସିଲେ ନାହିଁ । ରାଜା ଏଥିପାଇଁ ଯଦୁମଣିଙ୍କ ଉପରେ ଚିଡ଼ି ଯାଇଥାନ୍ତି ।

ଚୁଗୁଲିଆଙ୍କୁ ସୁଯୋଗ ମିଳିଗଲା । ସେମାନେ ରାଜାଙ୍କୁ କହିଲେ – ମଣିମା, ଯଦୁମଣି ଜମା ଭଲ ଲୋକ ନୁହେଁ । ସେ ଗୋଟାଏ ତମ୍ପ ସାପ । ତାକୁ ଛାମୁ ଦୁଧ ଦେଇ ପୋଷିଛନ୍ତି । ଦିନେ ନା ଦିନେ ଚୋଟ ମାରିବ ।

ଏହା ଶୁଣି ରାଜାଙ୍କ ମଥାକୁ ରାଗ ଚଢ଼ିଗଲା । କିଛି ଦିନ ପରେ ଯଦୁମଣି ଆସି ରାଜାଙ୍କୁ ଦେଖା କଲେ । ରାଜା କହିଲେ ଆଜିଠାରୁ ମୁଁ ତୁମ ମୁହଁ ଚାହିଁବି ନାହିଁ ।

ଯଦୁମଣିଙ୍କୁ ଭାରି ଅପମାନ ଲାଗିଲା । ସେ ଏଣିକି ଆଉ ରାଜସଭାକୁ ଗଲେନି । ଠାକୁରଙ୍କ କାମ ପାଇଁ ତାଙ୍କୁ ଜମି ମିଳିଥିଲା । ତେଣୁ ସେ କାମରେ ସେ ଟିକିଏ ହେଲେ ହେଳା କରୁ ନ ଥାନ୍ତି ।

ଏଣେ ରାଜା ରାଗରେ ସିନା ଯଦୁମଣିଙ୍କୁ ଏମିତି କହିଦେଲେ, ହେଲେ ସେ ନ ଥିବାରୁ ତାଙ୍କୁ ଜମା ଭଲ ଲାଗୁ ନ ଥାଏ । ଆକାଶରେ ଲକ୍ଷ ଲକ୍ଷ ତାରା ଅଛନ୍ତି । କିନ୍ତୁ ଚନ୍ଦ୍ର ନ ଥିଲେ ଆକାଶ ସୁନ୍ଦର ଦେଖାଯାଏ ନାହିଁ । ଠିକ୍ ସେହିପରି ଯଦୁମଣି ନ ଥିବାରୁ ରାଜସଭା ଶୋଭା ପାଉନାହିଁ ।

ରାଜାଙ୍କ ପାଟିରୁ ତ କଥା ବାହାରିଯାଇଛି । ସେ ଯଦୁମଣିଙ୍କୁ ଡ଼ାକାଇବେ କିମିତି ? ତେଣେ ଯଦୁମଣି ବିନା ଡ଼ାକରାରେ ରାଜାଙ୍କ ପାଖକୁ ଯିବାକୁ ନାରାଜ ।

ଦିନ ଗଡ଼ିଚାଲିଲା । ରଥଯାତ୍ରା ଆସିଗଲା । ଠାକୁରଙ୍କୁ ଚିତ୍ର କରିବା କାମ ଯଦୁମଣିଙ୍କର । ସେ ତାଙ୍କ କାମ ସାରିଦେଲେ । ରଥ ସାମ୍ନାରେ ରାଜା ବିଜେ ହେବା କଥା । କିନ୍ତୁ ରାଜା ଆସିଲେ

ନାହିଁ । କାରଣ ସେଠି ଯଦୁମଣି ଥିବେ । ସେ ତ ତାଙ୍କ ମୁହଁ ଚାହିଁବେ ନାହିଁ । ତେଣୁ ସେଠାକୁ ନ ଯିବା ଭଲ ।

ଏଣେ ରାଜାଙ୍କ ହାବୁଡ଼ରେ ପଡ଼ିବା ଡ଼ରରେ ଯଦୁମଣି ରାଜଗୁରୁଙ୍କ ଘରକୁ ଚାଲିଗଲେ । ଏହା ଶୁଣି ରାଜା ରଥ ପାଖକୁ ଆସିଲେ । ରଥ ଟଣା ହେଲା । ଯଦୁମଣି କ ଆଉ ସମ୍ଭାଳି ଯାଆନ୍ତି ? ରାଜଗୁରୁଙ୍କ ଘରେ ବାଉଁଶ ଡ଼ୋଲଟିଏ ଥିଲା । ସେ ତା ଭିତରେ ପଶିଗଲେ । ତାପରେ ଡ଼ୋଲ ମୁଣ୍ଡେଇ ସେ ଯାତ୍ରା ଗହଳରେ ମିଶିଗଲେ ।

ରଥଯାତ୍ରାରେ ନାହିଁ ନ ଥିବା ଭିଡ । ହଜାର ହଜାର ଲୋକ ରୁଣ୍ଡ ହୋଇଥାନ୍ତି । କିଏ ହାତ ଯୋଡ଼ି ଜଣାଣ ବୋଲୁଥାଏ । କିଏ ପାଟି କରୁଥାଏ । ଆଉ କିଏ ବାଜା ବଜାଉଥାଏ । କୋଳାହଳରେ ଦାଣ୍ଡଟା ଖାଲି କମ୍ପୁଥାଏ । ଏତିକିବେଳେ ସମସ୍ତଙ୍କ ଆଖି ପଡ଼ିଲା ଡ଼ୋଲ ଉପରେ । ଲୋକ ଚାଲିଛନ୍ତି । ଡ଼ୋଲ ଚାଲିଛି । ଲୋକଙ୍କୁ ଭାରି କୌତୁକିଆ ଲାଗିଲା ।

ଡ଼ୋଲ ଉପରେ ରାଜାଙ୍କର ବ ଆଖି ପଡ଼ିଲା । ସେ ତାଙ୍କ ପାଖ ଲୋକଙ୍କୁ ପଚାରିଲେ—ଏ କି ଅଜବ କଥା ! ଡ଼ୋଲଟାଏ କ'ଣ ଚାଲିଛି ?

ଜଣେ କହିଲା—ଆଜ୍ଞା, ବୋଲଗଡ଼ରୁ ପାଗଲଟାଏ ଆସିଛି । ତାର ଏଇ କାମ ।

ଆଉ ଜଣେ କହିଲା—ତୁମେ ଜାଣିନା, ସେଟା ସୁନାଖଳାର ବାଉଳି ଟୋକାଟାଏ । ତା ରଙ୍ଗ କ'ଣ କମ୍ ?

ହେଲେ କାଲ ଠାରୁ କାଲ ମା ଜାଣେ । ରାଜା ବୁଝିଗଲେ, ଏହା ଯଦୁମଣିଙ୍କ ଫନ୍ଦ । ଡୋଲ ଭିତରୁ ବାହାରି ଆସିବାକୁ ସେ ଯଦୁମଣିଙ୍କୁ କହିଲେ । ଯଦୁମଣି ରାଜାଙ୍କୁ

ଦଣ୍ଡବତ ହୋଇ କବିତାଟିଏ ଶୁଣାଇଲେ । ତାର ଅର୍ଥ ହେଲା— ହେ ରାଜା, ତୁମର ରୂପ, ବେଶ, କଥା, ସବୁ ସୁନ୍ଦର । ହେଲେ ରାଗିଗଲେ ତୁମେ ବାଉଳା ଭଳି କାମ କର ।

ରାଜା ନିଜର ଭୁଲ ବୁଝିପାରିଲେ । ଖୁସି ହୋଇ ସେ ତାଙ୍କ ବେକର ଫୁଲମାଳଟି ଯଦୁମଣିଙ୍କ ଆଡ଼କୁ ଫିଙ୍ଗିଦେଲେ । ଲକ୍ଷ କରିବାର ସେ ଓସ୍ତାଦ୍ ଥିଲେ । ଫୁଲମାଳଟି ଯାଇ ଠିକ୍ ଯଦୁମଣିଙ୍କ ବେକରେ ଲମ୍ବିଗଲା । ହଜାର ହଜାର ଲୋକ ଯଦୁମଣିଙ୍କ ଜୟକାର କଲେ ।

ଏମିତି ସମ୍ମାନ କୋଟିଏରେ ଗୋଟିଏ ଲୋକକୁ ମିଳିବା କଷ୍ଟ । ସେ ଦିନଠାରୁ ରାଜା ଯଦୁମଣିଙ୍କ ଉପରେ ଆଉ କେବେ ରାଗିଲେ ନାହିଁ ।








ଥରେ ନୂଆଗଡ଼ ରାଜମାତା ବେମାର ପଡ଼ିଲେ । କଞ୍ଚି ଆମ୍ବ ଚଟଣୀରେ ତାଙ୍କର ଭାରି ଶରଧା ଥାଏ । ସେ ତାହା ଖାଇବାକୁ ଚାହିଁଲେ । ବର୍ଷାଦିନେ କଞ୍ଚି ଆମ୍ବ କୋଉଠ ଅବା ମିଳିବ ? ରାଜା ବହୁତ ଚେଷ୍ଟା କଲେ । ହେଲେ ତାହା ପାଇଲେ ନାହିଁ ।

କିଛି ଦିନ ପରେ ରାଜମାତା ମରିଗଲେ । ତାଙ୍କ ଶୁଦ୍ଧିଘର କାମ ଭାରି ଧୁମ୍‌ଧାମ୍‌ରେ ଚାଲିଲା । ରାଜା ତାଙ୍କ ପୁରୋହିତଙ୍କୁ କହିଲେ—କଞ୍ଚି ଆମ୍ବର ଚଟଣୀ ମା ଲୋଡ଼ୁଥିଲେ । ତାହା ନ ପାଇ ସେ ମରିଗଲେ । ଏବେ ବି କଞ୍ଚି ଆମ୍ବ ମିଳୁନି । କ'ଣ କଲେ ମା ପରଲୋକରେ ତାହା ପାଇ ଖୁସି ହେବେ ?

ପୁରୋହିତ ଅନ୍ୟ ବ୍ରାହ୍ମଣମାନଙ୍କୁ ଏ କଥା କହିଲେ । ଠିକ୍ ହେଲା, ସୁନାରେ ଛୋଟ ଆମ୍ବ ତିଆରି ହେବ । ଶହେ·

ଆଠ ବ୍ରାହ୍ମଣଙ୍କୁ ଶହେ ଆଠଟି ଏମିତ ସୁନା ଆମ୍ବ ଦିଆଯିବ । ତାହାହେଲେ ରାଜମାତା ଆଉ ପାରିରେ ତାହା ପାଇପାରିବେ ।

ରାଜା ଶହେ ଆଠ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କଲେ । ସେମାନଙ୍କୁ ଭୋଜନ ଦେଲେ । ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସୁନା ଆମ୍ବ ଦେଲେ । ଶେଷରେ ସମସ୍ତଙ୍କୁ ଦକ୍ଷିଣା ଦେଲେ । ବ୍ରାହ୍ମଣମାନେ ମନଖୁସିରେ ଯେ ଯାହାର ଘରକୁ ଫେରିଗଲେ ।

ଯଦୁମଣି ଏସବୁ ଦେଖୁଥିଲେ । ସେ ଭାବିଲେ ବ୍ରାହ୍ମଣମାନଙ୍କୁ ଦେଲେ ରାଜମାତା ପାଇବେ କିମିତ ? ଯେ ମଲା, ସେ ଗଲା । ଏସବୁ ବ୍ରାହ୍ମଣମାନଙ୍କ କାରସାଦି । ଲୋଭରେ ଏମାନେ ରାଜାଙ୍କଠଉଁ ସୁନାଆମ୍ବ ଭଣ୍ଡି ନେଇଛନ୍ତି ।

ଯଦୁମଣି ବ୍ରାହ୍ମଣମାନଙ୍କ ଉପରେ ରାଗିଗଲେ । ସେ ଠିକ୍ କଲେ, ଏମାନଙ୍କୁ ଭଲ କରି ପାନେ ନ ଦେଲେ ଚଳିବନି । ତାହାହେଲେ ଯାଇ ବେଶ୍‌ଟାଏ ହେଜୁଥିବେ ।

କିଛି ଦିନ ପରେ ଯଦୁମଣିଙ୍କ ମାଙ୍କ ଶ୍ରାଦ୍ଧ ଦିନ ପଡ଼ିଲା । ସେ ଭାରି ଜାକଜମକରେ ଏଥର ଶ୍ରାଦ୍ଧ ଭୋଜି କଲେ । ସେଇ ଶହେ ଆଠ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କଲେ । ସେମାନଙ୍କୁ ଭୂରି ଭୋଜନ ଦେଲେ । ସେମାନେ ତାଙ୍କ ଉପରେ ଭାରି ଖୁସି ହେଲେ ।

ଏହାପରେ ଯଦୁମଣି ସେମାନଙ୍କୁ କହିଲେ— ଆପଣମାନେ ଦେବତା ସମାନ । ମୁଁ ଆପଣମାନଙ୍କ ଆଗରେ ମୋ ମନକଥା ଖୋଲି କହୁଛି । ମୋ ମାଙ୍କର ମୁଣ୍ଡବଥା ରୋଗ ଥିଲା । ତାଙ୍କ କପାଳରେ ଚଡ଼ୁକାଠି ଚଆଁ ଦେଲେ ଯାଇ ମୁଣ୍ଡବଥା କମୁଥିଲା । ଏବେ ତ ମା ସେ ପାରିରେ ଅଛନ୍ତି । ତାଙ୍କ ମୁଣ୍ଡ ନିଶ୍ଚୟ ବଥାଉଥିବ । ପୁଅ ହୋଇ ମୁଁ ତାଙ୍କ

କଷ୍ଟ ନ ବୁଝିବ କିମିତ ? ତେଣୁ ଦୁଇଟି ସୁନା ଚଡ଼ୁକାଠି ତିଆରି କରାଇଛୁ । ସେଥିରେ ଆପଣମାନଙ୍କ କପାଳକୁ ଟିକିଏ ଛୁଇଁଦେବ । ମୋର ବିଶ୍ୱାସ, ଏଥିରେ ମାଙ୍କ ମୁଣ୍ଡବିଥା ଭଲ ହୋଇଯିବ । ଏଇ ଉପାୟରେ ତ ଆପଣମାନେ ରାଜମାତାଙ୍କ ପାଖକୁ କିଛି ଆମ୍ବ ପଠାଇଥିଲେ ।

ବ୍ରାହ୍ମଣମାନେ ଆଁ କରି ତାଙ୍କ ଆଡ଼େ ଚାହିଁ ରହିଲେ । ଯଦୁମଣି ନଛୋଡ଼ବନ୍ଧା । ଯାହା କହିବେ, ତାହା କରିବେ । ସେ ନିଆଁରେ ଚଡ଼ୁକାଠି ତତାଇ ବ୍ରାହ୍ମଣମାନଙ୍କ କପାଳରେ ଚିଆଁ ଦେଲେ । ସେମାନଙ୍କୁ କଷ୍ଟ ହେଲା । ହେଲେ ଉଁ-ଚୁଁ କିଛି କଲେ ନାହିଁ । ଯଦୁମଣିଙ୍କ ପୁଅ କପିଧ୍ୱଜ ସେଠି ବସି ଦେଖୁଥାଏ । ପାଞ୍ଚବର୍ଷର ପିଲା । ଏହା ଦେଖି ତାକୁ ଭାରି ମଜା ଲାଗୁଥାଏ । ଯଦୁମଣି ସେମାନଙ୍କୁ ସୁନା ଚଡ଼ୁକାଠି ଦୁଇଟି ଓ ଦକ୍ଷିଣା ଦେଇ ବିଦା କଲେ ।

ବ୍ରାହ୍ମଣମାନେ କାନ୍ଦକାନ୍ଦ ହୋଇ ଯାଇଥାନ୍ତି । ଏ ଅପମାନ ମରଣଠାରୁ ବଳି । ସେମାନେ ଘରକୁ ନ ଯାଇ ସିଧା ଶରଣକୂଳ ଲଡ଼ୁବାବାଙ୍କ ମନ୍ଦିରରେ ପହଞ୍ଚିଲେ । ମନ୍ଦିର ପାଣିରେ ସୁନା ଚଡ଼ୁକାଠି ଓ ଦକ୍ଷିଣାତକ ଜମା ଦେଲେ । ଲଡ଼ୁବାବାଙ୍କ ଆଗରେ ସେମାନେ କାନ୍ଦ କାନ୍ଦ ଜଣାଇଲେ—ତୁମଠାରେ ଆମେ ଶରଣ ପଶୁଛୁ । ଆମ ପ୍ରତି ଅପମାନ ହୋଇଛି । ଏମିତ ଜୀବନ ଥାଇ କି ଲାଭ ? ତୁମେ ହିଁ ଏ କଥା ବୁଝ ।

ଚଡ଼ୁକାଠି ଚିଆଁ କଥା ବିଜୁଳି ବେଗରେ ସବୁଆଡ଼େ ବ୍ୟାପିଗଲା । କିଏ କହିଲା, ଠିକ ବ୍ରାହ୍ମଣଙ୍କୁ ଠିକ୍ ଶାସ୍ତି ମିଳିଛି । ଆଉ କିଏ କହିଲା, ନାଁ ଏଟା ଠିକ୍ ହେଲାନି । ଯେତେହେଲେ ସେମାନେ ବ୍ରାହ୍ମଣ । ସେମାନଙ୍କ ଅସନ୍ତୋଷ ନିଶ୍ଚୟ ଫଳିବ । ବ୍ରାହ୍ମଣ ଶାପରେ ପରା ଯଦୁବଂଶ ଧ୍ୱଂସ ପାଇଗଲା । ଯଦୁମଣି କି ଛାର !

ଏହାର ଦେଢ଼ ମାସ ପରର ଘଟଣା । ଗାଁ ମୁଣ୍ଡରେ ପିଲ୍ମାନେ ଖେଳୁଥାନ୍ତି । ସେମାନଙ୍କ ମେଳରେ ଯଦୁମଣିଙ୍କ ପୁଅ ଥାଏ । ସେ ପାଳରେ ନିଆଁ ଲଗାଇ ମଜା ଦେଖୁଥାଏ । ହଠାତ୍ ତା ଲୁଗାରେ ନିଆଁ ଲାଗିଗଲା । ସେଠି ବଡ଼ଲୋକ କେହି ଜଣେ ନ ଥିଲେ । ତେଣୁ କପିଧ୍ୱଜର ଦେହ ପୋଡ଼ିଗଲା । ଚିକିତ୍ସା ବି କିଛି କାମ ଦେଲା ନାହିଁ । ଯଦୁମଣିଂକ ଏକୋଇର ବଳା କପିଧ୍ୱଜ ସବୁ ଦିନ ପାଇଁ ଆଖି ବୁଜିଦେଲା ।

ପୁଅ ମରିଯିବାରୁ ଯଦୁମଣି ଓ ତାଂକ ସ୍ତ୍ରୀ ଭାଙ୍ଗି ପଡ଼ିଲେ । ସତେ ଯିମିତ ଆକାଶଟା ସେମାନଂକ ଉପରେ ମାଡ଼ି ପଡ଼ିଲା । ଯଦୁମଣି ଏବେ ବୁଝିପାରିଲେ, ବ୍ରାହ୍ମଣମାନଂକ ଅପମାନର ଫଳ ହେଲା ଏଇଆ । ସେ ନିଜକୁ କେତେ କିଛି ଛାଟିର କଲେ । ହେଲେ କପିଧ୍ୱଜ କି ଆଉ ଫେରି ଆସିବ ?

ଲୋକେ କହିଲେ—ଯେଉଁ ନିଆଁରେ ଯଦୁମଣି ବ୍ରାହ୍ମଣମାନଂକୁ ଶିଆଁ ଦେଲା, ସେଇ ନିଆଁରେ ତା ପୁଅ ପୋଡ଼ି ହୋଇ ମଲା ।

ঃ★୦★ঃ




ଯଦୁମଣିଙ୍କ ଘର ଇଟାମାଟିରେ । ବଡ଼ ଗାଁଟିଏ । ନୂଆଗଡ଼ଠାରୁ ବେଶୀ ଦୂର ନୁହେ । ଗାଁରେ କେତୋଟି ସାହି ଥାଏ । ସେଥିରୁ ଗୋଟିଏ ତେଲୀ ସାହି । ସେଠି ଅନେକ ତେଲ ଘଣା ଥାଏ । ତେଲୀମାନେ ଘଣାରେ ଖସା, ତିଳ, ଜଡ଼ା ଆଦି ପେଡ଼ନ୍ତି । ସେଥିରୁ ତେଲ ବାହାରେ । ସେମାନେ ତେଲ ବିକି ଘର ଚଳାନ୍ତି । ଆଉ କେତେ ଜଣ ତେଲୀ ଅନ୍ୟ ବେପାର କରନ୍ତି ।

ତେଲୀ ସାହିରେ ନିଧି ମହାପାତ୍ରଙ୍କ ଘର । ସେ ବି ଜଣେ ତେଲୀ । ତାଙ୍କ ମୂଳ ନାଁ ନିଧି ସାହୁ । ରାଜାଙ୍କ ଦୟାରୁ ମହାପାତ୍ର ପଦ ପାଇଛନ୍ତି । ସେ ଜଣେ ମହାଜନ । ବେପାର କରନ୍ତି । ଜମିବାଡ଼ି ବି ଅଛି । ଘରେ ସୁନାରୂପା, ଟଙ୍କା ପଇସା ଖୁନ୍ଦି ହୋଇ ଥାଏ । ଏତେ ଧନ ଥାଇ ବି ବୁଢ଼ାର ଲୋଭ କହିଲେ ନ ସରେ । ଧନ ବଢ଼ାଇବାରେ ତାଙ୍କର ଭାର ଝୁଙ୍କ୍ ଥାଏ ।

ନିଧି ମହାପାତ୍ରେ ଗଡ଼ାଗଡ଼ାଲକ କାଟନ୍ତି । ଦୁଇ ବେଳା ମନ୍ଦିରକୁ ଯାଇ ଠାକୁର ଦର୍ଶନ କରନ୍ତି । ବାହାରକୁ ଭାରି ଧାର୍ମିକ ଲୋକ ଭଳି ଦେଖାଯାନ୍ତି । କେବେ କେମିତି ଦୁଃଖୀରଙ୍କିଙ୍କ ହାତରେ ପଇସେ ଦି ପଇସା ଦିଅନ୍ତି । ରାଜାଙ୍କ ପାଖଲଗା ଲୋକ ସେ । ରାଜାଙ୍କ ଆଗରେ ନିଜ ଦାନଧର୍ମ କଥା ବଖାଣି କହୁଥାନ୍ତି ।

ରାଜା ବୁଝିଥିଲେ, ନିଧି ମହାପାତ୍ରେ ସତରେ ଜଣେ ଧାର୍ମିକ ଲୋକ । ରାଜାଙ୍କ ଲୋକମାନେ ବି ସେମିତି ଭାବୁଥିଲେ । ତେଣୁ ତାଙ୍କ କଥାରେ ସମସ୍ତେ ପରତେ ଯାଉଥିଲେ ।

ଦିନେ ନିଧିବୁଢ଼ା ମୁଣ୍ଡକୁ ଗୋଟିଏ ଅକଲ ଜୁଟିଗଲା । ସେ ଗାଁରେ ପ୍ରଚାର କଲେ—ଏଠି ଗୋଟିଏ ଠାକୁର ମଣ୍ଡପ ତିଆରି କରିବା ।

ଧର୍ମ କଥା । କିଏ କାହିଁକି ମନା କରିବ ? ଗାଁ ଲୋକେ ଖୁସି ହେଲେ । ତାପରେ ନିଧିବୁଢ଼ା ରାଜାଙ୍କୁ ଦେଖା କରି କହିଲେ—ଛାମୁ, ଟିକିଏ ଶୁଣିବା ହୁଅନ୍ତୁ । ଆମ ଗାଁ ଲୋକେ ଗାଁରେ ଠାକୁର ମଣ୍ଡପଟିଏ କରିବାକୁ ମନ କରିଛନ୍ତି । ମୁଁ କିଛି ଟଙ୍କା ଦେବି । ଛାମୁ କିଛି ଦାନ କଲେ କାମଟା ବଢ଼ିଯିବ । ଆପଣଙ୍କ ଧନ କେତେ ଧର୍ମ କାର୍ଯ୍ୟରେ ଲାଗୁଛି । ଏଠି କିଛି ଲାଗିଲେ ଛାମୁଙ୍କୁ ଗାଁ ଲୋକେ ସବୁବେଳେ ମନେ ପକାଉଥିବେ ।

ରାଜା ଖୁସି ହୋଇ କହିଲେ—ଠିକ୍ ଅଛି । ଆମ ଖଇଞ୍ଜିଁଠାରୁ ଦୁଇ ହଜାର ଟଙ୍କା ନେଇଯାଅ ।

ନିଧି ମହାପାତ୍ରେ ଟଙ୍କା ନେଇ ଗାଁକୁ ଗଲେ । ମଣ୍ଡପ ତିଆରି କାମ ଲାଗିଲା । ସେ ନିଜ ଘରୁ କାଣି କଉଡ଼ିଟାଏ ବି ଦେଲେ ନାହିଁ । ଏଣେ ଲୋକଙ୍କୁ କହିଲେ—ରାଜା କହିଛନ୍ତି,

ତୁମ୍ଭେମାନେ ବେଠି ଆକାରରେ ଏହି କାମରେ ସାହାଯ୍ୟ କରିବ ।

ରାଜାଙ୍କ ଆଜ୍ଞା ନ ମାନିବ କିଏ ? ପ୍ରତିଦିନ ସକାଳୁ ଉଠି ନିଧି ମହାପାତ୍ରେ ପାଟି କରନ୍ତି—ଆରେ ହେ ତୁମେ ଚାରି ଜଣ ମୂଲିଆ ଆଜି ମଣ୍ଡପରେ ମାଗଣା କାମ କରିବ । ଆଜି ତୁମ ପାଳି । ସମସ୍ତେ ହାତେ ହାତେ ନ ଦେଲେ ଏତେ ବଡ଼ କାମଟା ଉଠିବ କିମିତି ?

ତାପରେ ସେ ଚଷାସାହିକୁ ଯାଇ ହୁରି କରିବେ—ମୋହନ ପଧାନ ଆଉ ଗୋପୀ ପଧାନ, ଶୁଣ । ତମେ ଦିହେଁ ଆଜି ପାହାଡ଼ ତଳକୁ ଶଗଡ଼ ନେଇଯିବ । ସେଠୁ ଦଶ ଗାଡ଼ି ଲେଖାଏଁ ପଥର ଆଣି ମଣ୍ଡପ ପାଖରେ ପକାଇଦେବ । ବୁଝିଲ ?

ଆଉ କିଛି ପାହୁଣ୍ଡ ଆଗେଇଯାଇ ପାଟି କରିବେ—କେଳୁ ଆଉ ନଟ, ତମେ ଦିହେଁ କୋଡ଼ିଏ ଗାଡ଼ି ବାଲି ନଈରୁ ନେଇଆସିବ । ଧର୍ମ କାମରେ ସମସ୍ତଙ୍କର କିଛି କିଛି ଭାଗ ଥାଉ । ଗୋଟାପଣେ ମୋର ହୋଇ ରହିବ କିଆଁ ?

ମଣ୍ଡପ ତିଆରି କାମ ଶେଷ ହେଲା । ଲୋକେ ବେଠି ଖଟି ଖଟି ହାଲିଆ ହେଲେ । ତାପରେ ବି ବେଠି ଚାଲୁ ରହିଲା । ରାଜାଙ୍କ ନାଁରେ ନିଧିବୁଢ଼ା ଲୋକଙ୍କଠାରୁ କାଠ, ପଥର, ବାଲି ଆଦି ଆଣି ନିଜ ଘର ପାଖରେ ଠୁଳ କଲେ । ରାଜା ଦେବା ଟଙ୍କାରୁ ବି କିଛି ହାତ ପଇଠ କଲେ ।

ଶେଷରେ ନିଧି ମହାପାତ୍ରଙ୍କ ନାଁରେ ମଣ୍ଡପ ପ୍ରତିଷ୍ଠା ହେଲା । ଲୋକମାନେ ଭାବିଲେ, ଟଙ୍କା ରାଜା ଦେଲେ, ପ୍ରଜାଏ ବେଠି ଖଟିଲେ, ଆଉ ନାଁ ହେଲା ନିଧିବୁଢ଼ାର ।

ଏସବୁ ଦେଖି ଯଦୁମଣି ନିଧିବୁଢ଼ାକୁ କେଞ୍ଚାଏ ଦେବାକୁ ପାଞ୍ଚିଲେ । ମଣ୍ଡପ ତିଆରି ବିଷୟରେ ସେ ଗୋଟିଏ କବିତା

ଲେଖିଲେ । ଗାଁର ବଗ୍ଲଲିଆ ଟୋକାଙ୍କୁ ତାହା ଶିଖାଇଦେଲେ । ସେମାନେ ଗାଁ ଗାଁ ବୁଲି ଗାଇବାକୁ ଲାଗିଲେ—

ସରଳା ରାଜାଙ୍କ ଗଣ୍ଡି
ପରଜାଏ କଲେ ବେଠି
ଏମନ୍ତ ମଣ୍ଡପ ପ୍ରତିଷ୍ଠା ଗ୍ରଉଳ
ତେଲମୁଣ୍ଡେ ହେଲା ବୃଷ୍ଟି ।

ଏହା ଶୁଣି ନିଧି ମହାପାତ୍ରେ ରାଗରେ ନିଆଁବାଣ ହୋଇଗଲେ । ସେ ରାଜାଙ୍କ ଆଗରେ ଯଦୁମଣିଙ୍କ ବିରୋଧରେ ଫେରାଦ୍ କଲେ । ରାଜା ଯଦୁମଣିଙ୍କୁ ଡ଼ାକାଇ ପଚାରିଲେ । ଯଦୁମଣି କହିଲେ—ମୋ କଥା ସତ କି ମିଛ ଗାଁବାଲାଙ୍କୁ ଡ଼ାକି ଛାମୁ ପଚାରି ବୁଝନ୍ତୁ ।

ଗାଁ ଲୋକମାନେ ରାଜାଙ୍କ ଆଗରେ ନିଧିବୁଢ଼ାର ଜୁଲୁମ କଥା କହିଲେ । ବୁଢ଼ାଙ୍କୁ ସବୁଦିନ ପାଇଁ ରଜା ଦୁଆର ମନା ହେଲା । ଲୋକ ମୁହଁରେ ଲୁଣ ଲାଗିଲା ଭଳି ନିଧିବୁଢ଼ା କାନମୁଣ୍ଡ ଆଉଁସି ରହିଲେ ।

॥★○★॥



# ଠାକୁର ଘରେ

ମାଘ ମାସ । ସଞ୍ଜ ବେଳ । କୋହଲା ପବନ ବହୁଥାଏ । ଥରି ଜାଡ଼ ପଡ଼ୁଥାଏ । ଏତିକିବେଳେ ହଠାତ୍ ଯଦୁମଣିଙ୍କ ଘରେ କାନ୍ଦବୋବାଳି ଶୁଣାଗଲା । କ'ଣ ହେଲା ଭାବି ଲୋକମାନେ ଦୌଡ଼ି ଆସିଲେ । ବୁଝୁ ବୁଝୁ କ'ଣ ନା, ଯଦୁମଣିଙ୍କ ବାପା ମରିଗଲେ ।

ଗାଁ ଲୋକେ ନିଜ ନିଜ ଭିତରେ କୁହାକୁହି ହେଲେ । ବୁଢ଼ା ଭଲ କାମ କରିଥିଲା । ସେଥିପାଇଁ ମାଘ ପାଇଲା । ସେମାନେ ଯଦୁମଣିଙ୍କ ଘର ଲୋକଙ୍କୁ ବୁଝାଇଲେ—କାନ୍ଦି ଆଉ ଲାଭ କ'ଣ ? ପାଚିଲା ଆମ୍ବ, ଆଜି ନ ହେଲେ କାଲି ଝଡ଼ି ପଡ଼ିଥାନ୍ତା । ଭଲ ଦିନଟାରେ ଯାଇଛନ୍ତି । ଏବେ ଶବ ବାହାର କରିବା ଯୋଗାଡ କର । ରାତି ଆସି ହେଲାଣି । ଘରୁ ଶବ ନ ବାହାରିଲେ ଗାଁ ଲୋକେ ଉପାସ ରହିବେ ।

ଯଦୁମଣି ଉଠିଲେ । ନିଜ ଜାତି ଲୋକ କେତେ ଜଣଙ୍କୁ ଡ଼କାଇ ଆଣିଲେ । କାଠ ଯୋଗାଡ଼ ହେଲା । ତାପରେ ଗାଁ

ମଶାଣି ଆଡ଼େ ଶବ ଗ୍ଲଲା । ଗାଁର ଅନ୍ୟ ଜାତର କେତେଜଣ ଲୋକ ବି ଶବ ପଛେ ପଛେ ଯାଉଥାନ୍ତି । ପାଟି ଶୁଭୁଥାଏ— ରାମ ନାମ ସତ୍ୟ ହେ—ହରିବୋଲ । ସାହି ମାଇପିଏ ଦୁଆର ଖୋଲି ବାହାରକୁ ଅନାଇଲେ ।

ଗାଁ । ମଶାଣିରେ ଜୁଇ ଜଳୁ ଥାଏ । ତା ଭିତରେ ଶବଟା ଧୀରେ ଧୀରେ ପୋଡ଼ି ଯାଉଥାଏ । ପାଖ ବରଗଛ ତଳେ ଗ୍ଲରି ଛଅ ଜଣ ଲୋକ ବସି କଥା ହେଉଥାନ୍ତି ।

ଜଣେ କହିଲା—ହଁ, ଦୁନିଆଟା ଏମିତି । ଆଜି ମୁକୁନ୍ଦ ମହାପାତ୍ର ଗ୍ଲଲଗଲା । କାଲି ମୋ ପାଳି କି ତୁମ ପାଳି ପଡ଼ିବ । ଯାହାକୁ ଯେତେବେଳେ ପରବାନା ମିଳିଲା ସେ ଗ୍ଲଲା । ଯିବନି କହିଲେ ରହିପାରିବ ନାହିଁ । ଯିବ କହିଲେ ଯାଇ ପାରିବ ନାହିଁ ।

ଆଉ ଜଣେ କହିଲା—ନୁହେ ଆଉ କ'ଣ ? ଏ ତ ସଂସାରର ଲୀଳା । ଜୀଇଁଥିଲା ଯାଏଁ ମଣିଷର କେତେ ଲୋଭ, କେତେ ହିଂସା । ପେଟ କଣକ ପାଇଁ ତାର କେତେ ଧନ୍ଦା । ମୋ ଭାରିଯା, ମୋ ପୁଅ । ଆଖି ବୁଜି ଦେଲେ କିଏ କାହାର ?

ତୃତୀୟ ଲୋକ କହିଲା—ହେଲେ ମୁକୁନ୍ଦ ମହାପାତ୍ର ଭଲ ମଣିଷଟିଏ ଥିଲା । କାହାରି ସହିତ କଳିଗୋଳ କରୁ ନଥିଲା । ତା ଧନ୍ଦାରେ ସେ ଥାଏ । ଠାକୁରଙ୍କ କାମ ପଡ଼ିଲେ କରେ । ଗାଁ ଲୋକଙ୍କ ମନ ଜାଣି କାଠ କାମ କରିଦିଏ । ସେମିତି ଲୋଭୀ ଲୋକ ନୁହେଁ । ହାତ ଟେକି ଯାହା ଦେବ, ହସି ହସି ନେଇଯିବ ।

ଚତୁର୍ଥ ଲୋକ କହିଲା—ମୋ ବାପା କହୁଥିଲେ, ସେ ଗଞ୍ଜାମ ଆଠଗଡ଼ରୁ ଇଟାମାଟି ଗାଁକୁ ଆସିଥିଲେ ।

ସେତେବେଳେ ଯଦୁମଣିଙ୍କୁ ସାତ ଆଠ ବର୍ଷ ବୟସ ହେବ । ରାଧାମୋହନ ଠାକୁରଙ୍କ କାମ କରିବା ପାଇଁ ରାଜା କୁଆଡ଼େ ତାଙ୍କୁ ସେଠାରୁ ଡ଼କାଇ ଆଣିଥିଲେ ।

ଯଦୁମଣି ମଶାଣିରୁ ଫେରିଲେ । ସେ ମୁଣ୍ଡରେ ହାତ ଦେଇ ବସିଥାନ୍ତି । ଏବେ କ'ଣ କରିବେ ? ବାପାଙ୍କ ଶୁଦ୍ଧି କାମ ଚଳିବ କିପରି ? ତାଙ୍କୁ ଦଶ ଦିଗ ଅନ୍ଧାର ଦିଶିଲା । କାହା ଆଗରେ ସେ ହାତ ପତାଇବେ ? ଘରେ ତ ପଇସାଟିଏ ନାହିଁ । ଗାଁ । ଲୋକେ ତାଙ୍କୁ ଧାର ଉଧାର ଦେବେ ନାହିଁ । ଗୋଲଗାଲ କଥା କହୁଥିବେ । ହେଲେ ଅସଲ ବେଳକୁ ମୁହଁ ମୋଡ଼ିଦେବେ ।

ଯଦୁମଣି ରଜାଘର କଥା ଭାବିଲେ । ମାଗଯାଚ କଲେ ରାଜା ଅବା କିଛି ଦିଅନ୍ତେ । କିନ୍ତୁ ବାପା ମରିଛନ୍ତି, ତାଙ୍କର ମୃତକା ହୋଇଛି । ଅଶୁଭରେ ରାଜାଙ୍କୁ ଭେଟିବା ଠିକ୍ ନୁହେଁ । ତେଣୁ ସେ ସ୍ତ୍ରୀଙ୍କଠାରୁ ବିଡ଼ି ମାଠଟିଏ ମାଗି ଘୋଡ଼ାଇହେଲେ । ତାପରେ ସେଇ ଅନ୍ଧାର ରାତିରେ ନୂଆଗଡ଼ ଆଡ଼େ ପାଦ ବଢ଼ାଇଲେ ।

କଟିମିଟି ଅନ୍ଧାର । ମୁହଁକୁ ମୁହଁ ଦିଶୁନାହିଁ । ଯଦୁମଣି ପାଦ ଚପି ଚପି ଚାଲୁଥାନ୍ତି । ଶେଷରେ ସେ ନୂଆଗଡ଼ରେ ପହଞ୍ଚିଗଲେ । ସେତେବେଳେ ଅଧ ରାତି । କାଉକୋଇଲିଙ୍କ ସୋର୍‌ଶବଦ ନାହିଁ । ରାଧାମୋହନ ନିକଟରେ ସେ ଅଟକିଗଲେ । ମାଠଟି ଗୋଡ଼ରୁ ମୁଣ୍ଡ ଯାଏଁ ଢ଼ାଙ୍କି ମନ୍ଦିର ଦୁଆର ପାଖରେ ବସି ରହିଲେ ।

ପାହାନ୍ତିଆ ହେଲା । ସେବକ ମାନେ ପହଞ୍ଚିଗଲେ । ଦେଖିଲେ, କେହି ଜଣେ ଦୁଆର ମାଡ଼ି ବସିଛି । ତୁମେ କିଏ ଏଠି ବସିଛ ବୋଲି ପଚାରିବାରୁ ଯଦୁମଣି କହିଲେ—ଦେଖୁଛ ତ ବସିଛି । ପଚାରୁଛ କିଆଁ ? ବଡ଼ଭାଇକୁ ସାନଭାଇ

ଜଣାଇବାକୁ ଆସିଛି । ବାପା ମରିଗଲେ । ଶୁଦ୍ଧି ଖର୍ଚ୍ଚରୁ ଅଧା ସେ ଦେବେ । ପୁଣି ଆଜି ଉପାସ ପାଳିବେ । ବାପମଲା ପୁଅର ନୀତିକାନ୍ତି ହେବ କମିତ ?

ସେବକମାନେ ଠଉରାଇନେଲେ, ଏ ଯଦୁମଣି ଛଡ଼ା ଆଉ କେହି ନୁହେଁ । ଯେତେ କହିଲେ ଏ ଶୁଣିବ ନାହିଁ । ତେଣୁ ସେମାନେ ରାଜଗୁରୁଙ୍କୁ ଏ କଥା ଜଣାଇଲେ । ରାଜଗୁରୁ ରାଜାଙ୍କ ସହ ସେଠି ଆସି ପହଞ୍ଚିଲେ ।

ରାଜା କହିଲେ—ତୁମେ କିଏ ? ଦୁଆରୁ ଉଠିଯାଅ । ଠେଣେ ଠାକୁରଙ୍କ ନୀତିରେ ଡେରି ହେଉଛି ।

ଯଦୁମଣି କହିଲେ—ଆଜ୍ଞା, ମୁକୁନ୍ଦ ମହାପାତ୍ରଙ୍କ ଦୁଇଟି ପୁଅ । ଏଇ ରାଧାମୋହନ ଠାକୁର ତାଙ୍କର ବଡ଼ ପୁଅ । ଛାମୁଙ୍କ ବାପା ତାଙ୍କ କାମ ପାଇଁ ତାଙ୍କୁ ଆଠଗଡ଼ରୁ ଇଟାମାଟି ଡ଼କାଇ ଆଣିଥିଲେ । ମୁଁ ଦଦେଦ୍ର ଯଦୁମଣି ତାଙ୍କ ସାନପୁଅ । କାଲି ରାତିରେ ବାପା ମରିଗଲେ । ତେଣୁ ଆମ ଦ ଭାଇଙ୍କୁ ଅଶୌଚ ଲାଗିଲା । ବଡ଼ଭାଇ, ସାନଭାଇ ବାଣ୍ଟି କୁଣ୍ଟି ପଇସା ଖର୍ଚ୍ଚ କରି ଶୁଦ୍ଧି କାମ କରିବେ । ଛାମୁ ତ ବିଚାରପତି । ଏ କଥା ବିଚାର କରନ୍ତୁ ।

ରାଜା ବୁଝିପାରିଲେ, ପଇସା ଅଭାବରୁ ଯଦୁମଣି ଏ ଭେକ ଧରିଛନ୍ତି । ଶୁଦ୍ଧିକାମ ପାଇଁ ସେ ଯଦୁମଣିଙ୍କୁ ଦୁଇ ଶହ ଟଙ୍କା ଦେଲେ ।

ଯଦୁମଣି ଖୁସି ହୋଇ ଘରକୁ ଫେରିଗଲେ । ଦୁଇ ଶହ ଟଙ୍କାରେ ସେ ବାପାଙ୍କ ଶୁଦ୍ଧିକାମ ସୁବିଧାରେ ଚଳାଇଦେଲେ ।

ଃ★୦★ଃ




ନୂଆଗଡ଼ ରାଣୀଙ୍କ ଜନ୍ମଦିନ ଉତ୍ସବ ପ୍ରତିବର୍ଷ ଭାରି ଜାକଜମକରେ ହୁଏ । ହଜାର ହଜାର ଲୋକ ରଜାଘର ଭୋଜି ଖାଆନ୍ତି । ଭୋଜି ପାଇଁ ଗାଁ ଲୋକଙ୍କ ବାଡ଼ିବଗିଚାରୁ ପନିପରିବା ମାଗଣା ଆସେ । ଗାଁ ସରବରାକାର ଲୋକଙ୍କ ବାଡ଼ିବଗିଚାରେ ପଶି ଏ ସବୁ ଜବରଦସ୍ତି ନେଇ ଯାଉଥାନ୍ତି ।

ସେ ବର୍ଷ ଯଦୁମଣି ତାଙ୍କ ବାଡ଼ିରେ ଖୁମ୍ବଆଳୁ ଲଗାଇ-ଥିଲେ । ରାଣୀଙ୍କ ଜନ୍ମଦିନ ଆସିଲା । ସରବରାକାର ଲୋକ ପଠାଇ ତାଙ୍କ ବାଡ଼ିରୁ ସବୁ ଖୁମ୍ବଆଳୁ ଖୋଳାଇ ନେଇଗଲେ । ସେତେବେଳେ ଯଦୁମଣି ଘରେ ନ ଥିଲେ । ତାଙ୍କ ସ୍ତ୍ରୀ ଯୁବତୀ ଲୋକ । କାହାକୁ ସେ ଦେଖା ଦେଉ ନ ଥିଲେ । ତେଣୁ ସେ ପାଟି ଫିଟାଇଲେ ନାହିଁ ।

ଯଦୁମଣି ଘରକୁ ଫେରି ସ୍ତ୍ରୀଙ୍କଠାରୁ ସବୁ କଥା ଶୁଣିଲେ । କଥାଟା ତାଙ୍କର ଜମା ପସନ୍ଦ ହେଲାନି । ରାଜା ହେଉ, ଯିଏ ହେଉ, ଏ ଜବରଦସ୍ତି କାହିଁକି ? ପୁଣି ମାଲିକ ଘରେ ନ

ଥିଲା ବେଳେ ଏ କୁଲୁମ୍ ଠିକ୍ ନୁହେଁ । ଗାଁ ସରବରାକାର ଉପରେ ସେ ରାଗିଗଲେ । ଏଇଟା ରଜାଙ୍କ ପୋଷା କୁକୁର । ରାଜାଙ୍କ ଆଗରେ କୁଁ-କୁଁ ହୋଇ ଲାଞ୍ଜ ହଲାଉଥିବ । ଏଣେ ଗାଁବାଲାଙ୍କୁ ନାଲି ଆଖି ଦେଖାଇ ଜିନସ ଆଦାୟ କରୁଥିବ ।

ସେ ମନେ ମନେ ଠିକ୍ କଲେ, ଏଥର ସରବରାକାରଙ୍କୁ ଭଲ କରି ପାନେ ଦେବେ । ସ୍ତ୍ରୀଙ୍କୁ ତେଲ ଟିକିଏ ମାଗିଲେ । ସ୍ତ୍ରୀ ପଚାରିଲେ—ଏବେ ତେଲ କ'ଣ କରିବ ?

ଯଦୁମଣି କହିଲେ—ଆହେ, ତମେ ଆଗେ ତେଲ ଟିକିଏ ଦେଲ । ଆଜି ସରବରାକାର ବେଟାକୁ ବୁଦ୍ଧି ନ ଶିଖାଇଛି ତ ମୋ ନାଁ ଯଦୁମଣି ନୁହେଁ ।

ଯଦୁମଣି ଦେହସାରା ତେଲ ବୋଳି ହେଲେ । ତାପରେ ସେ ସିଧା ନୂଆଗଡ଼ ବାଟ ଧରିଲେ । ରାଜାଙ୍କ ନଅର ଦୁଆରଠି ପହଞ୍ଚି ପାଟି କଲେ—ମଣିମା, ମଣିମା ।

ରାଜା ପହଞ୍ଚି କହିଲେ—କିହୋ ଯଦୁମଣି, ତେଲ ଲଗାଇ ଏମିତ ଅଡରଛୁଆ ବୋବାଳି ଛାଡ଼ୁଛ କିଆଁ ? କଥା କ'ଣ ?

ଯଦୁମଣି କହିଲେ—ଆଜ୍ଞା, କ୍ଷମା କରିବେ, ମୁଁ ଗାଧୁଆ ତୁଠରୁ ସିଧା ଏଠାକୁ ଚାଲି ଆସିଲି । କଥା କ'ଣ କି, ମୋ ବାଡ଼ିରୁ ସରବରାକାର ଖୁମ୍ବଆଳୁ ସବୁ ଖୋଳାଇ ଏଠାକୁ ନେଇ ଆସିଲେ । ଆଣିବାରେ ମୋର କିଛି ଆପତ୍ତି ନାହିଁ । ହେଲେ କଥାଟା ଟିକିଏ ବିଗିଡ଼ିଗଲା ।

ରାଜା ପଚାରିଲେ—କ'ଣ ବିଗିଡ଼ିଗଲା କହୁନା ?

ଯଦୁମଣି ହାତ ଯୋଡ଼ି କହିଲେ—ଆଜ୍ଞା, ସେ ଖୁମ୍ବଆଳୁ ଛାମୁଙ୍କ ସରଘରକୁ ଆଣିବା ଠିକ୍ ହେଲାନି ।

ରାଜା କହିଲେ—ଆହେ, କଥାଟା ସିଧା କହ । ଏମିତ ଲମ୍ବାଇ କହୁଛ କିଆଁ ?

ଯଦୁମଣି କହିଲେ—ଆମ ବାଡ଼ପଟେ ଗାତ ଖୋଳ ଖାଡ଼ା ଫେରୁ । ଖାଡ଼ା ମାଟି ପାଳଟିଲେ ସେଥିରେ ଆଳୁ ମଞ୍ଜି ଟିଏ ପୋତି ଦେଉ । ଏମିତ ଅସନା ଜିନିସରେ ଆମ ଖୁମ୍ବଆଳୁ ବଢ଼ିଛି । ତାହା ଛାମୁଙ୍କ ଦେବତା, ବ୍ରାହ୍ମଣ, ବୈଷ୍ଣବ କୃତ୍ୟରେ କମିତ ଲାଗିବ ? ଏକଥା ଭାବି ମୋ ମନକୁ ପାପ ଛୁଇଁଲା । ଏହା ଛାମୁରେ ଟିକିଏ ଜଣାଇଦେବାକୁ ଅଗାଧୁଆ ଦୌଡ଼ି ଆସିଲି ।

ରାଜା କହିଲେ—ଯଦୁମଣି, ତୁମେ ଏ କଥା ନ କହିଥିଲେ ମୋ ଶୁଭ କାମରେ ଅଶୁଭ ଘଟିଥାନ୍ତା । ଆଚ୍ଛା, ତୁମ ଜିନିସ ଚହ୍ନି ପାରିବଟି ?

ଯଦୁମଣି କହିଲେ—ଆଜ୍ଞା, ଆମ ଜିନିସ କାହା ସହିତ ମିଶିବ ନାହିଁ । ସବୁଠାରୁ ବଡ଼ ଖୁମ୍ବଆଳୁତକ ଆମର ।

ରାଜା ସରବରାକାରଙ୍କୁ ଡ଼କାଇ କହିଲେ—ଦେଖ, ଯଦୁମଣି ସରଘରେ ପଶି ତାଙ୍କ ଖୁମ୍ବଆଳୁ ବାଛିଦେବେ । ତାହା ଗାଡ଼ିରେ ଲଦି ତାଙ୍କ ଘରକୁ ପଠାଇଦେବ ।

ଖୁମ୍ବଆଳୁ ଦେହରେ ଲାଗିଲେ ଗଲୁ ହୁଏ । ତେଣୁ ଯଦୁମଣି ତେଲ ଲଗାଇ ଆସିଥିଲେ । ସେ ସରଘରୁ ସବୁଠାରୁ ବଡ଼ ଖୁମ୍ବଆଳୁ ବାଛି ଅଲଗା କରିଦେଲେ । ତାହା ଗାଡ଼ିରେ ତାଙ୍କ ଘରକୁ ପଠାଇ ଦିଆଗଲା । ସରବରାକାର ବୁଝିଗଲେ, ଯଦୁମଣି ଭଲ ଜିନିସତକ ଉଠାଇ ନେଇଛନ୍ତି । ରାଜାଙ୍କ ହୁକୁମ, କାହାକୁ କ'ଣ ଅବା କହିବେ ?

ଯଦୁମଣିଙ୍କ ସ୍ତ୍ରୀ ଏତେ ଖୁମ୍ବଆଳ ଦେଖି କାବା ହୋଇଗଲେ । ଯଦୁମଣି କହିଲେ—ସରବରାକାର ନେଲେ ଗୁଣେ, ଦେଲେ ଦଶ ଗୁଣ । ମୁଁ କ'ଣ ମିଛରେ ତେଲ ବୋଳି ହୋଇ ଯାଇଥିଲି ?

ଏହାପରେ ରାଜା ସରବରାକାରମାନଙ୍କୁ କଡ଼ା ଆଦେଶ ଦେଲେ—ଲୋକଙ୍କଠଉଁ ଜବରଦସ୍ତ ଜିନିଷ ଆଣିବ ନାହିଁ । ସେମାନେ ଖୁସିରେ ଯେତିକ ଦେବେ, ସେତିକ ଆଣିବ ।






ନୂଆଗଡ଼ ରାଜା ଖୁସି ହୋଇ ଯଦୁମଣିଙ୍କୁ ଜମି ଖଣ୍ଡେ ଦେବେ ବୋଲି କହିଲେ । ସେ ତାଙ୍କ କଚେରୀର ବେବର୍ତ୍ତା ପଟ୍ଟନାୟକଙ୍କୁ ଆଦେଶ ଦେଲେ—ଶୀଘ୍ର ଯଦୁମଣିଙ୍କ ନାଁରେ ଖଣ୍ଡିଏ ନିଷ୍କର ଜମି ଲେଖିଦିଅ ।

ଯଦୁମଣି ଖୁସି ହେଲେ । ହେଲେ ବେବର୍ତ୍ତା ପଟ୍ଟନାୟକ ଯଦୁମଣିଙ୍କୁ ଭଲ ପାଉ ନ ଥିଲେ । ସେ ଏକା କାହିଁକି, ଅନେକ ରାଜ କର୍ମଚାରୀ ଯଦୁମଣିଙ୍କୁ ହିଂସା କରୁଥିଲେ । କାରଣ ସେ ରାଜାଙ୍କ ପାଖଲଗା ଲୋକ ଥିଲେ ।

ମାସ ମାସ ହୋଇ ବର୍ଷେ ବିତିଗଲା । ଯଦୁମଣି ଜମି ପାଇଲେ ନାହିଁ । ସେ ବେବର୍ତ୍ତା ପଟ୍ଟନାୟକଙ୍କୁ ଦୁଇ ଚାରିଥର ଏ ବିଷୟ ମନେ ପକାଇଦେଲେ । ସେ ଖାଲି ଦେବା ଦେବା କହୁଥାନ୍ତି । ହେଲେ ସେଥିରେ ଇଚ୍ଛା ନ ଥିବାରୁ କାମଟା କରୁ ନ ଥାନ୍ତି । ଶେଷରେ ଯଦୁମଣି ତାଙ୍କୁ କହିଲେ—ଜମି ମୋ ନାଁରେ ଲେଖିବ, ନା ମୁଁ ରାଜାଙ୍କୁ ଜଣାଇବ ।

ବେବର୍ତ୍ତା ପଟ୍ଟନାୟକ ବେ ଜାଙ୍କ ଉପରେ ଜମି ଖଣ୍ଡେ ଲେଖିଦେଲେ । ହେଲେ ଏମିତ ଜମି ଦେଲେ, ଯାହା ପାଇବା ନ ପାଇବା ସମାନ କଥା । ସାପ ନ ମରୁ, ବାଡ଼ି ନ ଭାଙ୍ଗୁ ଏଇ କଥା ମନରେ ରଖି ସେ ଏମିତ କରିଥିଲେ ।

ଥରେ ଯଦୁମଣି ସେଇ ଜମିଆଡ଼େ ଘେରାଏ ବୁଲି ଆସିଲେ । ଦେଖିଲେ, ସେଟା ପୂରା ଟାଙ୍ଗର ପଡ଼ିଆ । ସେଠି କୁଶ ବି କଅଁଳିବ ନାହିଁ । ସେ କି ସହଜରେ ଛାଡ଼ିବା ଲୋକ ? ସେ ରାଜାଙ୍କ ପାଖକୁ କବିତାଟିଏ ଲେଖି ପଠାଇଦେଲେ । ତାହା ଏଇପରି—

ଦେଉ ଆଜ୍ଞା ହେଲେ ହରଷେ,
କରଣ ତା କଲେ ବରଷେ ।
ବାଛି ବାଛି କରି ଦେଲେ ପଡ଼ିଆ,
ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ,
ଏମନ୍ତ ସେ ଭୂଇଁ
ଚକୁଣ୍ଡା ବୁଣିଲେ ଉଠଇ ନାହିଁ ।

କବିତାଟିର ଅର୍ଥ ଏହିପରି—ରାଜା ଖୁସି ହୋଇ ଯଦୁମଣିଙ୍କୁ ଜମି ଖଣ୍ଡେ ଦେବାକୁ ଆଦେଶ ଦେଲେ । କାରଣ ବର୍ଷେ ଯାଏଁ ତାଙ୍କୁ ଭଣ୍ଡି ଭଣ୍ଡି ଶେଷରେ ଜମି ଖଣ୍ଡେ ଲେଖିଦେଲେ । ସେଟା ଗୋଟିଏ ପଡ଼ିଆ ଜମି, ପଥର ପରି ଟାଣ । ଶ୍ରାବଣ ମାସରେ ତା ଉପରେ ନଡ଼ିଆ ପିଟିଲେ ଫାଳ ହୋଇଯିବ । ଫସଲ କଥା ଦୂରେ ଥାଉ, ସେଠି ଚକୁଣ୍ଡା ବୁଣିଲେ ବି ଉଠିବ ନାହିଁ ।

କବିତାଟି ପଢ଼ି ରାଜା ରାଗରେ ନିଆଁବାଣ ହୋଇଗଲେ । ସେ ପଟ୍ଟନାୟକଙ୍କୁ ଡ଼କାଇ ଭୀଷଣ ଗାଳି ଦେଲେ । ସେଇ

ପଡ଼ିଆ ଜମି ବଦଲରେ ଯଦୁମଣିଙ୍କୁ ଭଲ ଗହୀର ଜମି ଦେବାକୁ ଆଦେଶ ଦେଲେ । ପଟ୍ଟନାୟକେ ଉର୍ବର ଭଲ ଜମି ଖଣ୍ଡେ ତାଙ୍କ ନାଁରେ ଲେଖିଦେଲେ । ହେଲେ ରାଜା ତାଙ୍କ ଉପରେ ଏଥିପାଇଁ ଭାରି ବିଗିଡ଼ି ଯାଇଥିଲେ । ତେଣୁ ପଟ୍ଟନାୟକଙ୍କୁ ତିନି ମାସ ଯାଏଁ ରାଜଦ୍ୱାର ମନା ହେଲା ।

ଯଦୁମଣି ଭଲ ଜମି ଖଣ୍ଡେ ପାଇଲେ । ପଟ୍ଟନାୟକଙ୍କୁ ଭଲ କରି ପାନେ ମିଳିଲା । ଏଥିରେ ଯଦୁମଣିଙ୍କ ଆନନ୍ଦ ଦେଖେ କିଏ ?





# ଯଦୁମଣିଙ୍କ ଯାଦୁମଣି

ନୂଆଗଡ଼ ରାଜା ମରିଗଲେ । ସେ ଯଦୁମଣିଙ୍କ ଅଭାବ ଅସୁବିଧା ବେଳେ ବରାବର ସାହାଯ୍ୟ କରୁଥିଲେ । ନୂଆ ରାଜା ଜମା ଭଲ ଲୋକ ନ ଥିଲେ । ସେ ଯଦୁମଣିଙ୍କୁ ପାଖ ମଡ଼ାଇ ଦେଲେ ନାହିଁ । ତାଙ୍କ ବାପା ଦେଇଥିବା ଜମି ଖଣ୍ଡିକ ବି ସେ ଯଦୁମଣିଙ୍କ ପାଖରୁ ଛଡ଼ାଇ ନେଇଗଲେ ।

ଯଦୁମଣି ଏବେ ବଡ଼ ଝଲେଣିରେ ପଡ଼ିଲେ । ତାଙ୍କ ଘର ସଂସାର ଚଳିବ କିମିତି ? ତେଣୁ ସେ ଠିକ୍ କଲେ, ଅନ୍ୟ ରାଜାଙ୍କ ପାଖକୁ ଯାଇ କିଛି ମାଗଯାଚ କରିବେ । ଏମିତି ସେ ଅନେକ ରାଜାଙ୍କୁ ଭେଟିଲେ । ଛାନ୍ଦ, ଚଉପଦୀ ଶୁଣାଇ କିଛି ଧନ ଦରବ ଆଣି ନିଜ ପରିବାର ଚଳାଇଲେ ।

ଥରେ ସେ ଅନୁଗୁଳ ରାଜାଙ୍କୁ ଭେଟିବାକୁ ଗଲେ । ପାଖରେ ତାଙ୍କ ଶାଳୀଘର ଗାଁ । ସେଠି ସେ ରହିଲେ । ଅନୁଗୁଳ ରାଜା ଖଣ୍ଡ ଓ ଅତ୍ୟାଚାରୀ ଥିଲେ । ତେଣୁ ତାଙ୍କ ଶାଳୀ ଓ ସଢ଼ୁ ସେ ରାଜାଙ୍କୁ ଭେଟିବାକୁ ତାଙ୍କୁ ମନା କଲେ ।

ଆହୁରି ଅନେକ ଲୋକ ବି ରାଜାଙ୍କ ବିଷୟରେ ସେହିପରି କହିଲେ ।

ହେଲେ ଯଦୁମଣି ନଛୋଡବନ୍ଧା । ସେ ଅନୁଗୁଳ ରାଜାଙ୍କୁ ଦେଖା କରି କିଛି ଛାନ୍ଦ, ଚଉପଦୀ ଶୁଣାଇଲେ । ରାଜା ଖୁସି ହୋଇ ତାଙ୍କୁ ଅନେକ ଲୁଗାପଟା, ଟଙ୍କା ଆଦି ଦେଲେ ।

ଯଦୁମଣି କହିଲେ—ମୁଁ ଛାମୁଙ୍କୁ ମନ୍ତ୍ରଟିଏ ଦେବି । ତାହା ନେବାର ବୟାଳିଶ ଦିନ ପରେ ତା ପ୍ରଭାବ ଜାଣିବେ । ଆପଣ ସମସ୍ତଙ୍କୁ ଦେଖିପାରିବେ, ହେଲେ ଆପଣଙ୍କୁ କେହି ଦେଖିପାରିବେ ନାହିଁ ।

ରାଜା ଖୁସି ହୋଇ କହିଲେ—ତାହାହେଲେ ମୋତେ ଶୀଘ୍ର ସେଇ ମନ୍ତ୍ରଟା କହିଦିଅ ।

ଯଦୁମଣି କହିଲେ—ମନ୍ତ୍ର ନେବା ଆଗରୁ ଗୋଟିଏ ଯାଦୁବିଦ୍ୟା ଦେଖିଥାନ୍ତୁ ।

ସେ ରାଜାଙ୍କ ପାଖରେ ଗୋଟିଏ ଚକଚକିଆ ମୁଣି ଥୋଇ କହିଲେ—ଆଜ୍ଞା, ଏଇଟି ମୋ ଯାଦୁମୁଣି । ଏଥିରେ ଯାଦୁ ବାକ୍ସ ଅଛି ।

ଏହା କହି ସେ ମୁଣି ଭିତରୁ ଯାଦୁ ବାକ୍ସଟି ବାହାର କଲେ । ତାକୁ ସେ ଭିନ୍ନ ଭିନ୍ନ ରଙ୍ଗ ଦେଇଥିଲେ । ତାହା ଚକ୍ ଚକ୍ କରୁଥାଏ । ସେଇ ବାକ୍ସ ଭିତରେ ସାନରୁ ସାନ ହୋଇ ଆଉ ଛଅଟି ବାକ୍ସ ଥିଲା । ସବା ସାନ ବାକ୍ସ ଭିତରୁ ସେ ଗୋଟିଏ ଚକଚକିଏ ଦର୍ପଣ ଭଳି ଜିନିସ ବାହାର କଲେ । ତାପରେ ସେ ରାଜାଙ୍କୁ କହିଲେ—ଆଜ୍ଞା, ଏଇଟି ଗୋଟିଏ ଯାଦୁ ଦର୍ପଣ । ଏହାର ଧଳା ପାଖରେ ଦେଖିଲେ ଆପଣଙ୍କ ବାପାଙ୍କ ସାତ ପୁରୁଷଙ୍କୁ ଦେଖିପାରିବେ । ହଳଦିଆ ପାଖରେ ଦେଖିଲେ ମାଙ୍କ ସାତ ପୁରୁଷଙ୍କୁ ଦେଖିପାରିବେ ।

ସଭାରେ ଚହଳ ପଡ଼ିଗଲା । ରାଜା ଦର୍ପଣକୁ ନିଜେ
ଅନାଇଲେ । ହେଲେ ତାଙ୍କୁ କିଛି ଦେଖାଗଲା ନାହିଁ
କେବଳ ସେଇ ସାତଟା ବାକ୍ସ ଦେଖାଗଲା । ଏତିକବେ
ଯଦୁମଣି ରାଜାଙ୍କ କାନରେ ଫୁସ୍ ଫୁସ୍ କରି କହିଲେ--ଆ
ଗୋଟିଏ କଥା କହି ରଖୁଛି । ଯାହାର ବାପାମାଙ୍କ ଠିକ
ନ ଥିବ, ତାକୁ କିଛି ଦେଖାଯିବ ନାହିଁ ।

ରାଜାଙ୍କୁ ଭାରି ଲାଜ ମାଡ଼ିଲା । ତାଙ୍କ ବାପାମା
ଠିକଣା ନାହିଁ ବୋଲି ଲୋକେ ଜାଣିଲେ ତାଙ୍କୁ ରାଜା ବେ
ମାନବେ କିଆଁ ? ତେଣୁ ସେ ମିଛରେ କହିଲେ—ହଁ, ହ
ଦିଶୁଛି ।

ରାଜାଘର ମନ୍ତ୍ରୀ, ପାତ୍ର, କରଣ ସମସ୍ତେ ତାହା ଦେ
ସେହିପରି କହିଲେ । ସମସ୍ତେ ଯଦୁମଣିଙ୍କୁ ଧନ୍ୟ ଧନ୍ୟ କଲେ
ରାଜା ତାଙ୍କଠାରୁ ମନ୍ତ୍ର ନେଲେ । ପ୍ରକୃତିରେ ଯଦୁମଣି ଏ
ତେଣୁ କହି ମନ୍ତ୍ର ବୋଲି ରାଜାଙ୍କୁ ଭଣ୍ଡିଦେଲେ । ରାଜା ତା
ବହୁତ ଟଙ୍କା ଲୁଗାପଟା ବିଦାକି ଦେଲେ ।

ଯଦୁମଣି ଘରକୁ ଫେରିଲାବେଳେ ମନେ ମ
କହୁଥାନ୍ତି—ଖଣ୍ଡ ରାଜାକୁ ମୋ ଯାଦୁମୁଣି ବେଶ୍ କାମ ଦେଲା

